# ଋତୁ ବସନ୍ତ

ଶ୍ରୀମତୀ ରେଣୁବାଳା ସିଂହ

ପ୍ରକାଶକ :

ରେଣୁ ପବ୍ଲିଶରସ୍
ବାଣୀବିହାର, ଭୁବନେଶ୍ୱର

ପ୍ରକାଶକ :

**ରେଣୁ ପବ୍ଲିଶରସ୍**
ବାଣୀବିହାର, ଭୁବନେଶ୍ୱର

ସତ୍ତ୍ୱାଧିକାରୀ :

**ଲେଖିକା**

ପ୍ରକାଶ :

**ମହାସପ୍ତମୀ**
ସେପ୍ଟେମ୍ବର-୧୯୮୭

ପ୍ରଚ୍ଛଦପଟ ଶିଳ୍ପୀ :

**ଶ୍ରୀ ଅଜୟ କୁମାର ସିଂହ**

ମୁଦ୍ରଣ :

**କଳିଙ୍ଗ ପ୍ରିଣ୍ଟର୍ସ**
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

ମୂଲ୍ୟ : ବାରଟଙ୍କା

# ଉତ୍ସର୍ଗ

ମୋ ପାଣ୍ଡୁଲିପିର ପ୍ରଥମ ପାଠକ ଓ ନିରପେକ୍ଷ ସମାଲୋଚକ, ମୋ ସୃଜନୀର ପୃଷ୍ଠପୋଷକ ଓ ପ୍ରେରଣା ଦାତା, ମୋର ସ୍ୱାମୀ ପ୍ରଫେସର ସଚ୍ଚିଦାନନ୍ଦ ସିଂହଙ୍କ କର କମଳରେ "ଋତୁ ଓ ବସନ୍ତ"କୁ ଅର୍ପଣ କଲି ।

ରେଣୁବାଳା

ଏଇତ, ଗୋଟିଏ ଅଦ୍ଭୁତ ଅନ୍ତରର ଲଜ୍ଜିତ କଳିତ ଦଶା । ଅଗଣିତ ବସନ୍ତର ସମାବେଶ—ବଗିଚାରେ ଫୁଲ ଫୁଲିଆ ମନ ମହକା ପବନ ମନକୁ ମତାଣିଆ କରି ତୋଳୁଛି । ତା'ର ଗନ୍ଧ, ତା'ର ରୂପ, ଆଉ ତା'ର ଅମାନିଆଁ ପଣରେ ଦେହରୁ ବାରମ୍ବାର ଲୁଗା ଟାଣୁଛି । ବଡ଼ ସେ ଅମାନିଆଁ । କାହିଁ ଦୂର ଆମ୍ବ ତୋଟାରେ ରହି ରହି କୋଇଲିଟା ବି ଆନନ୍ଦରେ ରାବି ଉଠୁଛି । ଫୁଲ ଫୁଲିଆ ପବନରେ ଫୁଲର ଗନ୍ଧ ସ୍ପର୍ଶ କରି ବାତାୟନର ପାଖେ କହୁଛି—"ମୁଁ କେଡ଼େ ସୁନ୍ଦର, କେତେ ମହକ ମୋର—ତୋ'ର ଅଛି କି ?"

ଋତୁ ତା'ର ବେଡ଼ରୁମ୍‌ର ବଡ଼ ଆଇନାରେ ନିଜକୁ ଥରେ ଦେଖିନେଲା । ବାଳଗୁଡ଼ା ପବନରେ ଏପଟ ସେପଟ ହୋଇଯାଇଛି । ମୁଣ୍ଡର ସିନ୍ଦୂର ବିନ୍ଦୁଟି ଘଷରି ହୋଇଯାଇଛି । ସଜାଡ଼ି ନେବାକୁ ହେବ—ହଁ ଖୁବ୍ ଚଞ୍ଚଳ—ନ ହେଲେ ଘର ଲୋକ କ'ଣ ଭାବିବେ—ଦିନଟାରେ ।

ବସନ୍ତ ଛୁଟି ନେଇ ଆସିଛନ୍ତି ଆଠଦିନ ହେବ । ଶ୍ୱଶୁରଘରକୁ ଆସିଥିଲେ—ଆଉ ଫେରି ଏବେ । ଗଲା ବର୍ଷେ ହେବ ବାହାଘର । ଆଉ ଏବେ ଆସିଛନ୍ତି ଫୁର୍ତ୍ତି କରିବାକୁ—ଘରେ ନବ ବିବାହିତା ପତ୍ନୀ ।

ଠିକ୍ ଗୋଟିଏ ଗୋଲାପର ହସିଲା ହସିଲା ଚେହେରା ପରି । ଅନେକ ସମୟରେ ବସନ୍ତ ଡାକନ୍ତି, "ଋଜ" । କିନ୍ତୁ ଋତୁ ବାରଣ କରନ୍ତି "ହେ ସେପରି ଡାକନା—କିଏ ଯଦି ଶୁଣିବ—ତେବେ"—"ତେବେ କ'ଣ ହେବ ?" ଅଧା କଥାର ପୂର୍ଣ୍ଣାଙ୍ଗ କରନ୍ତି ବସନ୍ତ । ଋତୁ ହସି ହସି ଚାଲିଯା'ନ୍ତି ଘର ଭିତରକୁ । କାଳେ କିଏ ଦେଖିବ ।

ଏଇତ ଅଳ୍ପଦିନ ହେବ ବାହାଘର । ଲୋକେ କ'ଣ ଭାବିବେ ? ନଣନ୍ଦଟାର ଯଦିବା ବୟସ ହୋଇନି, କିନ୍ତୁ ସେ ବୁଝିପାରେ । ବେଳେବେଳେ କୁହେ "ଭାଉଜ ତୁମର ଦେହ କ'ଣ ଖରାପ ଅଛି କି ? ଏପରି ଦିଶୁଛ କାହିଁକି ?" ହସିକି ଋତୁ

କହେ "କିଛି ହୋଇନ ତ !! ଆରେ ଆସନା—କ'ଣ ଗୋଟାଏ ମଜା ଜିନିଷ କିଣି ଖାଇବା ।" ତା'ପରେ ଠଗ୍ଠଗ୍···।

କିଛି ଦିନ ତଳେ ଦୋଳ ପଡ଼ିଥିଲା । ଶିପ୍ରାର କେଇଜଣ ଝିଅ, ପୁଅ ସାଙ୍ଗ ଆସିଥାନ୍ତି । ସାଉଜଙ୍କୁ କହିଦେଲା କିଛି ଜଳ-ପାଣିର ବନ୍ଦୋବସ୍ତ କରିବାକୁ । ଶିପ୍ରା ବଡ଼ ତଜ୍ଜରରେ କହିଲା—"ସାଉଜ ଶୀଘ୍ର ଆୟୋଜନ କରିବ ।" ଶିପ୍ରା ତା'ର ସାଙ୍ଗମାନଙ୍କ ସାଥିରେ ବୁଲୁଥିଲା, ଆଉ ବାରିବଗିଚାର ପ୍ରଶଂସା କରି କରି ଚାଲିଥିଲା । ତାଙ୍କୁ ବାରମ୍ବାର କହି ଆପ୍ୟାୟିତ କରୁଥିଲା—"ଏ ଫୁଲ ଗଛଟି ନନ୍ଦନକାନନରୁ ଆସିଛି, ଏ ଫୁଲ ଗଛଟି ନର୍ସରୀରୁ ଆସିଛି, ଏ ଫଳଟି ବଡ଼ ସୁଆଦ—ବହୁତ ଫଳ ଫଳେ" ଭାରି ସ୍ୱାଦିଷ୍ଟ ଇତ୍ୟାଦି ।

ଅନେକ ସମୟରେ ଶିପ୍ରା ଗାଳି ଖାଏ ମାଆଙ୍କଠୁ ତା'ର ଏ ସ୍ୱଭାବ ପାଇଁ । ଅହଲ୍ୟାଦେବୀ ବଡ଼ ରାଗି । ଯଦି ବା ରାଗି ଯେପରି କହି ହେବନି । କିନ୍ତୁ ଶାସନ କରନ୍ତି । ସ୍ନେହ ବି କରନ୍ତି । ଶିପ୍ରାର ତାଙ୍କୁ ଭାରି ଡର—ଆକଟରେ ସେ ରହିବାକୁ ହୁଏ । ରାଗିଲା ସ୍ୱରରେ ଅହଲ୍ୟା କହିଲେ "ହଇଲେ ଶିପ୍ରା, ତୋ ଦେଇ ତ ଗୋଟାଏ କାମ କରିପାରିଲିନି ମୁଁ—ଏତେ ଗାଲେଇ"—"ତୋ ସାଙ୍ଗ ଆସିବେ । ଗୋଟାଏ ନୁହେଁ, ଦଶଟା ନୁହେଁ, ଏକାଠି ଛ ଛ ଜଣ, ସାତ ସାତ ଜଣ । ସେଥିପାଇଁ ଆଲମାରିର ବାସନ ସବୁ କାଢ଼ିବୁ, ତାକୁ ଧୋଇକି ରଖିବୁନି—ଚାକର ବାକର ଭାଙ୍ଗି ଦେବେ ତ କ'ଣ ହେବ ?"

"ବହି ସବୁ ଯେମିତି ପାଣ୍ଡିରୁ । ଯାହାକୁ ଯେମିତି ଦେଇଦେବୁ । ପଚାରିବୁନି, ଗୋଟାଏ ଝିଅ ତୁ—ତୋ'ର କିଛି ଟିକେ ଠିକଣା ଅଛି । ସବୁଥିରେ ଆଲୁରା-ପଣ—ଏମିତି କ'ଣ ଝିଅ ସବୁ ହୁଅନ୍ତି ।"

ସେତେବେଳେ ଶିପ୍ରା ତା'ର ବସି ବହି ପଢ଼ୁଛି । କଲେଜ ଛୁଟି ହୋଇଛି । ଡ୍ରଇଁରୁମରେ ବସିଛି, ଟେପ ଲାଗିଛି, ଗୀତ ଶୁଣା ହେଉଛି । ବୋଉର କଥା କେଉଁ କାନରେ ବାଜୁଛି ଯେ ହେବ···।

ଏହିପରି ପ୍ରତ୍ୟେକ ଦିନ ଶିପ୍ରା ଗଣ୍ଡଗୋଳ କରେ । ଆଉ ବୋଉ ଯେତେବେଳେ ବୁଝନ୍ତି ସେ ବୁଝେ "କେତେଥର କହିଛି କାହା ଉଦାହରଣ ମୋତେ ଦେବୁନି

ଟୋକି । ସେ ଯାହାର ନିଜ ପାଖରେ ନିଜେ ସ୍ୱତନ୍ତ୍ର" ଶିପ୍ରା ରାଗିଯାଏ । ଅହଲ୍ୟା ଚୁପ୍
ହୋଇଯା'ନ୍ତି । ଆଜିକାଲି ପିଲା କ'ଣ ମାନୁଛନ୍ତି ଯେ ମାନିବେ । ଭଲ କହିଲେ ମନ୍ଦ ।
ଶିପ୍ରା କ'ଣ ଡରିବା ଝିଅ ଯେ ଡରିବ ? ବେଶି ରାଗିଗଲେ ଭଙ୍ଗାରୁଜା କରିବ ।
ସେଥିପାଇଁ ଅହଲ୍ୟା ପ୍ରାୟ ଶିପ୍ରାକୁ କିଛି କୁହନ୍ତି ନାହିଁ । ତା ବାପ ତ ମୁଣ୍ଡ ଖାଇଛନ୍ତି
ତା'ର । ଏତେ ଗେଲବସର କରିଛନ୍ତି ମାଇକିନା ଝିଅଟାକୁ—ଟିକେ ଆକଟ ବାରଣ
ନାହିଁ—ଶିପ୍ରା କାନ୍ଦି ପକାଇଲେ ସବୁ ସରିଲା ।

ବରେଣ୍ୟ ନାରାୟଣ ବେଳେବେଳେ ହଇରାଣ ହୋଇଯା'ନ୍ତି । ବରେଣ୍ୟ ନାରାୟଣ
ହେଲେ ଗୋଟିଏ ବଡ଼ ଭୋଳା ଭଲ ଲୋକ । ଅହଲ୍ୟାଙ୍କୁ କୁହନ୍ତି "ହଁ, ହଁ ପିଲାଙ୍କୁ
ନ କହିଲେ କିଛି ଜାଣିନାହାନ୍ତି, କହିବାକୁ ହେବ ତ ।" କିନ୍ତୁ କିଛି କୁହନ୍ତିନି ।
ସେଥିପାଇଁ ଅହଲ୍ୟା ଦେବୀ ଆଉ ବରେଣ୍ୟ ନାରାୟଣଙ୍କର ଅନେକ ସମୟରେ କଟକଟା
ହୁଏ । କିନ୍ତୁ ତା'ର ଫଳ କିଛି ହୁଏ ନାହିଁ । ସେ ଯେଉଁ ଚୁପ୍‌କୁ ସେଇ ଚୁପ୍ ।
ଏଇ ବରେଣ୍ୟ ବାବୁଙ୍କର ଚୁପ୍ ରହିବା ଭିତରେ ଯେପରି ଅହଲ୍ୟାଙ୍କୁ ବହୁତ କହିବାକୁ
ଆଉ ସହିବାକୁ ହୋଇଥାଏ । ଆଜିକାଲି ଦୁନିଆଁରେ କାହାକୁ କିଛି ନ କହିଲେ କି
ହୁଏ । ଅହଲ୍ୟା ଯେ କୁହନ୍ତି ଅଯଥାରେ କହିବାକୁ ତା ନୁହେଁ । ସେ କୁହନ୍ତି ଯେ
ଯେଉଁଠାରେ ଦରକାର କହିବାକୁ ସେଠାରେ କହିବାକୁ ପଡ଼ିବ । ନହେଲେ ଚଳିବ
କିପରି ? ବରେଣ୍ୟ ନାରାୟଣ ବୋଧହୁଏ ଚୁପ୍ ରହିବାକୁ ଶପଥ ନେଇଛନ୍ତି କି କ'ଣ
ସେଇପରି ମନେହୁଏ ।

ଅହଲ୍ୟାଙ୍କୁ ଯେପରି କହିବାକୁ ବେଶି ପଡ଼ିଥାଏ ଏହି ସଂସାରଟି ପ୍ରତି । ସେ
ଦେଖନ୍ତି ସବୁ ଉଚ୍ଛୃଙ୍ଖଳ—କାହାକୁ କହିବେ, କିପରି କହିବେ । ଗୋଟାଏ ସମସ୍ୟା
ହୋଇ ଠିଆ ହୁଏ---ଅନେକ ସମୟରେ ମର୍ମାହତ ହୋଇପଡ଼ନ୍ତି ।

ଝୁଲ୍ ଚଉକିରେ ବରେଣ୍ୟବାବୁ ଡାକି ଦିଅନ୍ତି—"ଆରେ ଅହଲ୍ୟା, ଶୁଣ,
ଆଜି ଶିପ୍ରାର କ'ଣ ପରୀକ୍ଷା ଫଳ ବାହାରିବାର ଥିଲା, କିଛି କହୁଥିଲା କି ? ଆଉ ଶୁଣ
ଏ କାଗଜଟା ଖୋଜିକି ରଖିଥିବ, ବହୁତ ଦରକାର । ଆଉ ହଁ, ମାଛ କି ମାଂସ
କ'ଣ ଆଣିବ ? ଆଉ ସବୁ କ'ଣ ଆସିବ ?" ଏକାଥରକେ ଏତେଗୁଡାଏ କଥା କିଛି
ମୁଣ୍ଡରେ ପଶେ ନାହିଁ ଅହଲ୍ୟାଙ୍କର । କେଉଁ କାମଟା ଆଗ କେଉଁ କାମଟା ପଛ ସେ
କଥା ବି ଭାବିବାକୁ ସମୟ ନାହିଁ ।

ସେ ଗୃହାନ୍ତି ସେଫେଇ ଘରେ କଏ ଅଛି କି ନା ? ବର୍ତ୍ତମାନ ଝିଁଡ୍ରାଂ କଲେଜ ଯିବ । ଉଚ୍ଛନ୍ନ କରିବ ଖାଇବାକୁ । ଆଉ ପୁଅଝିଅଟା ବି ଘଣ୍ଟାଏ ହେଲା ଗାଧୋଉଛନ୍ତି, ସକାଳ କାମରେ ଟିକେ ତରତର ନାହିଁ । ଏତେବେଳଯାଏ ବାସନ-ଗୁଡ଼ା ବି ପଡ଼ିଛି, ବୁଢ଼ୀଟା ମାଜିବାକୁ ବି ଆସିନି । ଝାର ଅଡ଼େ ଘାର ଅଛି । ଚୂକର ପୁଅଝିଅ ଦୁଇ ଦୁଇଟା—ଫେର ପିଲାଛୁଆ ଘର—ଗୃହଅଡ଼େ ଅଛି ନ ହେଲେ ନହୁଏ । ସେଥିପାଇଁ ଅହଲ୍ୟାଙ୍କର ବହୁତ ଜଞ୍ଜାଳ ।

ଗୁଡ଼ାଏ ଦାୟିତ୍ୱ—ଗୁଡ଼ାଏ ବୋଝ—ଗୁଡ଼ାଏ ଅଶାନ୍ତି । ସତେ ଯେପରି ଏଗୁଡ଼ିକ ସାଙ୍ଗମେଳ ହୋଇ ଘେରାନ୍ତି—ଆଉ ଘେରିବାର ଯେପରି ଅନ୍ତ ନାହିଁ । ଭଲ ଗୃହିଣୀ, ଭଲ କାର୍ଯ୍ୟ ପଟୁତା, ଭଲ ଗୁଣବାନ ତ ପିଲାଙ୍କୁ କରିବାକୁ ହେବ । ତେଣିକି ଆଉ ସବୁ ଯାହା । ଏହି ଦାୟିତ୍ୱର ବା ଜଞ୍ଜାଳର ଅବସାନ କାହିଁ, ଆହ୍ଲାଦର ନିଶ୍ୱାସ ମାରିବାକୁ ? ସେଗୁଡ଼ିକ ଅହଲ୍ୟାଙ୍କର ଶିରା ପ୍ରଶିରାରେ ମଜ୍ଜାଗତ ଏପରି ହୋଇ ଗଲେଣି ଯେ ତାଙ୍କୁ ଛାଡ଼ିଲେ ଯେପରି ଅହଲ୍ୟାଙ୍କୁ ଶାନ୍ତି ମିଳେନା ।

୨

କେବେ କେମିତି ଅହଲ୍ୟା ବାପଘର ଯାଆନ୍ତି—ସେ ବି ବହୁତ କମ । ଆଉ ବଡ଼ଭାଇ ନାରାୟଣଙ୍କ ଗାଁକୁ କେବେ କେମିତି ଯା'ନ୍ତି ଏକ ଅହେତୁକ ଆନନ୍ଦ ମିଳେ ଗାଁର ସେଇ ଦରପାଠୁଆ ଲୋକଙ୍କ ମେଳରେ । ସେ ଗାଁର ମାଟି, ସେ ଗାଁର ମମତା, ବେଳେବେଳେ କୁହେ ଯେପରି "ସବୁ ଛାଡ଼ି ଚାଲି ଆ ଏହି ତୋର ପୂର୍ବପୁରୁଷଙ୍କର ଭିଟାମାଟିକୁ ।" ସେ ଚଳଣି ତ ପୁରା ଅଲଗା—ନା ଅଛି ସମୟର ଗଣନା—ନା ଅଛି ଆଗ ପଛର ଶୋଚନା । ଶଗଡ଼ ଚକ ଗଡ଼ିଲା ପରି ଗଡ଼ି ଚାଲିଛି, ଗଡ଼ି ଚାଲିବ ଧୀର ମନ୍ଥର ଗତିରେ—ଯେପରି ଶାନ୍ତ ଆଉ ମଧୁର ତା'ର ଚାଲି, ଗୋଟିଏ··· ଗୋଟିଏ··· । ନାହିଁ କ୍ଷିପ୍ର ହେବାର ଲାଳସା, ନାହିଁ ଚଞ୍ଚଳର ଭରସା । ଏହି ପରି ଗଡ଼ି ଚାଲିବ ତା'ର ବୁନିଆଦର ପରମ୍ପରା ଯାହାର କରି । ନ ହେଲେ ବି ଦୁଃଖ ନାହିଁ—ହେଲେ ବି ଆନନ୍ଦ ଯେପରି ନାହିଁ । ଦୁଇ ଛକୋଟି ବର୍ତ୍ତିତ ଚଳଣିରେ ଅହଲ୍ୟାଙ୍କ ସେ ଅନୁଭୂତି କେତେ ମନେପଡ଼େ ।

ଆଉ ଟାଉନ—ଟାଉନର ଗତି ଅନ୍ୟପ୍ରକାର ଦେଖନ୍ତି ଅହଲ୍ୟା । ଟାଉନର ଗତି ବହୁତ ଚଞ୍ଚଳ, ବହୁତ କ୍ଷିପ୍ର ଆଉ ମଧ୍ୟ ତୀକ୍ଷ୍ଣ । ଟାଉନରେ ଟାଇମ୍ ଜଗି ଜଗି ମଣିଷ ଅଣ-ନିଶ୍ୱାସି ହୋଇଯାଏ । ଟାଉନର ଲାଂମଧୋସ୍ତ ଜୀବନକୁ କରେ ଆହୁରି ତୀବ୍ର । ଯେପରି

ଅନ୍ଧକାର ଶର୍ବରୀର ବୁକୁ ଭେଦି ସେ କାହାକୁ ସୂଚାଇ ଦେବାକୁ ଚାହେଁ ଏଠି ବିଜନ ପଥ ପଡ଼ି ବି ମନେହୁଏ । ଜୀବନର ହୋ ହା କୋଳାହଳ ଭିତରେ ସେ ଯେପରି ସଦା ଜାଗ୍ରତ, ସାରା ରାତି ଅନିଦ୍ରା ହୋଇ ପଥିକକୁ ରାସ୍ତା ଦେଖାଏ ।

ମନେପଡ଼େ ଗାଁ କଥା । ଅନେକ ସମୟରେ ବଡ଼ ପୋଖରୀ ବନ୍ଧ ଘାଟର ନିର୍ମଳ ଟଳମଳ ପବନରେ ହଲୁଥିବା କାଚକେନ୍ଦୁ ପାଣି—ଗାଧୋଇବାକୁ ମନେ ହୁଏ । ଜୀବନର ସୀମିତ ଧରାବନ୍ଧା ନିୟମକୁ ଧରି ଯେପରି ମଣିଷ ଅଭ୍ୟାସୀ ହୋଇ-ଗଲାଣି । ସେଇ ପାଇପ୍ ପାଣି, ସେଇ ବାଥ୍‌ରୁମ୍ ଗାଧୁଆ, ଆଉ ପ୍ରାୟ ବ୍ୟତିକ୍ରମ ହୋଇ ନାହିଁ । ବନ୍ଧଘାଟ ବୋଲି ବଡ଼ ପୋଖରୀକୁ କୁହନ୍ତି । ଥରେ ଗାଧୋଇଲେ ମନ ଛାଡ଼େନା । ନିର୍ମଳ ଥଣ୍ଡା ପାଣି । ତା'ର ହୁଡ଼ାରେ ମସ୍ତବଡ଼ ବରଗଛଟା—କେଉଁ ପୁରାଣ କାଳର କଥା ପରି ସତେ ଯେପରି ମୂକ ସାକ୍ଷୀ ରୂପେ ଠିଆ ହୋଇଛି । ସେଇ ବରଗଛ ପାଖରେ ଆଉ କେତୋଟି ଗଛ ଲାଗି ରହିଛି । ସୁବୁଣ୍ଡା ଆଉ ଅମ୍ବ ମିଶାମିଶି ଝଙ୍କାଳିଆ ଗଛ, ଭରା ଯୌବନ ବହୁଳ । ମୂଳକରେ ଲାଗିଛି ମେଞ୍ଚାଏ ମେଞ୍ଚାଏ ସିନ୍ଦୂର ଆଉ ଫୁଲ । ଭଙ୍ଗାରୁଜା ମାଟି ଘୋଡ଼ା, ଭଲ ଘୋଡ଼ା ବି କେତୋଟି ମିଳିଛି । ମଣିଷ ଯାହା ମାନସିକ କରେ ପାଏ, ଆଉ ମାନସିକ ପୂର୍ଣ୍ଣ ହେଲେ ମାଟି ଘୋଡ଼ା ବସା'ନ୍ତି ଗଛ ମୂଳରେ । ଘୋଡ଼ାକୁ ଦେଖିଲେ ମନେହୁଏ କେତେ ଯେ ବର୍ଷର ସେଗୁଡ଼ିକ ପୁରୁଣା ! ଦେବତା ଅଛନ୍ତି, ଆଉ ମଣିଷ ବିଶ୍ୱାସ କରି ପାଇଆସିଛି । ସଂଧ୍ୟାବେଳେ କେହି ସେ ବାଟରେ ଯିବାକୁ ଡରନ୍ତି । ଯଦି ନିହାତି ଦରକାର ହୁଏ ଗୁଣିଆ ଡାକି ଦେହ କଳା ଯା'ନ୍ତି ।

ଗାଁ ଘରେ କାମ କରେ ସପନ ବୋଉ । "ନୂଆ ସାନ୍ତାଣୀ" କହି ପଛେ ପଛେ ଲାଗି ରହିଥାଏ । କାମଧନ୍ଦା କରେ । ଅହଲ୍ୟାଙ୍କୁ ତା'ର ଖୁବ ଶ୍ରଦ୍ଧା ଥିଲା ପରି ମନେ ହୁଏ, ଗଣ୍ଡାଏ ଖାଇବା ଆଉ ଖଣ୍ଡେ ପିନ୍ଧିବା ପାଇଁ । ଚାରିଆଡ଼କୁ ଆଖି ବୁଲାଇଥାଣି କୁହେ "ନୂଆ ସାନ୍ତାଣୀ, ବୁଢ଼ୀ ସାନ୍ତାଣୀ କହୁଥିଲେ କି, ବୋହୂକୁ ରାତି ଘଡ଼ିଏ ଥିବ ଗାଧୋଇନେବୁ ।" ରାତି ଯାକ ନିଦ ହେଉନି ମୋତେ । କାଲେ ଫସଫାଟି ଯିବ—ବୁଢ଼ୀ ସାନ୍ତାଣୀ କହିଛନ୍ତି ରାତି ଘଡ଼ିଏ ଥିବ ଯିବୁ । କାଳେ ଲୋକବାକ ଉଠିଯିବେ ବୋହୂକୁ ଦେଖିନେବେ । ସେଥିପାଇଁ କିନ୍ତୁ ଏତେ ରାତିରୁ ଗଲେ ଯଦି ଭୂତ ବାଟ ବାହୁଲା କରେ କ'ଣ ହେବ ସାନ୍ତାଣୀ ?" ଅହଲ୍ୟା କହିଲେ "ଠିକେ ସକାଳ

ହୋଇଗଲେ ସିନା ।" ସପନ ବୋଉ ଗୁଣ୍ଡି ଟିକେ ହାତରେ ମଳି ମଳି କହିଲେ, "ସାନ୍ତାଣି, ଏକଥା ମିଛ ନୁହେଁ, ଏଟା ସତ । ତଳ ସାହିର ନରିଆ ନୁହେଁ—ତା ସ୍ତ୍ରୀକୁ ପରା ଭୂତ ଡାକି ନେଇ ବାଡ଼େଇ ବାଡ଼େଇ ଛାଡ଼ିଲା—ସମସ୍ତେ ଦେଖିଛନ୍ତି ।" ଅହଲ୍ୟାଙ୍କ ଛାତି ଧପ୍ କରି ପଡ଼ି ଗଲା । ଅଜଣା ଭୟ ତାଙ୍କ ମନକୁ ଆନ୍ଦୋଳିତ କଲା । ସେ ତ ସେତେବେଳକୁ ମାତ୍ର ଅଠର ବର୍ଷର ହୋଇଥିଲେ । ସେ ବା କ'ଣ ଜାଣିଥିଲେ ଭଲ ମନ୍ଦ ।

ଅହଲ୍ୟାଙ୍କ ବାପଘର ନିପଟ ମଫସଲରେ—କୁଜଙ୍ଗ ଖାରସପଡ଼ାରେ । କିନ୍ତୁ ଏପରି ଦିନେ କାହାଠୁ ଶୁଣିନାହାନ୍ତି । ସପନ ବୋଉ ଢଙ୍ଗରେ କଥା କହୁଛି, ଅହଲ୍ୟା ଶୁଣୁଛନ୍ତି । କିଛି ଉତ୍ତର ଦେବାକୁ ଡର ମାଡ଼ୁଛି । ଯେତେହେଲେ ତ ଶାଶୁଘର, ମଫସଲ ଯାଗା । ବାହାଘର ପରେ ଅହଲ୍ୟା ସେତେବେଳକୁ ଥରେ ମାତ୍ର ବାପଘରକୁ ଯାଇ ଫେରିଆନ୍ତି । ଟିକେ କେଉଁଠି ଅଡୁଆ ହୋଇଗଲେ ଆର ନିନ୍ଦା କଥା କହିବେ । ଉଲୁଗୁଣା ଦେଇ କହିବେ, "ଯା ବୋହୂଟି ଭଲ—ତା ବୋହୂଟା ଖରାପ" ଇତ୍ୟାଦି । ତାଠୁ ତ ଭଲ ଚୁପ୍ ରହିବା । ଗାଁ କଥା—ଯେ ଯାହାର ହାଣ୍ଡି ଅଲଗା । ଘର ଅଲଗା ଥିଲେ ମଧ୍ୟ ଲାଗେ ଯେପରି ଗାଁ ଗୋଟାକ ଗୋଟାଏ ହାଣ୍ଡି—ଗୋଟାଏ ଘର । ସମସ୍ତଙ୍କ ସାଥିରେ ଭଲ ବ୍ୟବହାର କରିବାକୁ ହେବ, ହାତେ ମାପି ଚୁଟଖେଣ୍ଡେ ଚାଲିବାକୁ ହେବ । ନିଜ ମନକୁ ନିଜ ପାଖରେ ବଳି ଚଢ଼ାଇବାକୁ ହେବ । ସମସ୍ତଙ୍କ ସାଥିରେ ସମସ୍ତଙ୍କର ଘନିଷ୍ଠ ସମ୍ବନ୍ଧ ଥିଲା ପରି ମନେହୁଏ ଯେପରି । ଏତ ଅଳ୍ପ ବୟସର ଶ୍ରେଷ୍ଠ କିଶୋରୀ ଅହଲ୍ୟା—ସେତେବେଳେ ପ୍ରତି କ୍ଷେତ୍ରରେ ଡରୁଥିଲେ । ସ୍ୱର୍ଣ୍ଣ ପତ୍ତୁରି କି ଶୂନ୍ୟ ପତ୍ତୁରି ଜାଣିନଥିଲେ । ସେ ଜାଣିଥିଲେ ନିଜର ସ୍ୱାର୍ଥ, ନିଜର କାମନା, ବାସନା ତର୍ପଣ କରିବାକୁ ହେବ । ଯେଉଁ ଦିନ ଅହଲ୍ୟା ବାପଘରୁ ଆସିଲେ ସେଇ ଦିନ ବେଦୀ ମଣ୍ଡପର ପୂଜା ଅଗ୍ନି, ହୋମ ଦେହରେ ନିଜର ଅଲଅଲ ଗେହ୍ଲା ପିଲା ପଣିଆ ଯେପରି ଆହୁତି ଦେଇ ଆସିଛନ୍ତି । ପ୍ରତି କ୍ଷେତ୍ରରେ ଯେପରି ନିଜକୁ ଖାପ ଖୁଆଇ ଚଳାଇବାକୁ ହେବ—କେହି ଯେପରି ତାଙ୍କର ଭାବ ତାଙ୍କଠାରେ ପ୍ରକାଶ ନ କରନ୍ତି । ସେଥିପ୍ରତି ଅହଲ୍ୟା ଖୁବ୍ ସାବଧାନ ହୋଇ ଚଳନ୍ତି । ନିଜ ମନ ପୋଡ଼ିଯାଉ ପଛେ, ପରକୁ ହସି ହସି କଥା କହିବାକୁ ହୁଏ । ନହେଲେ ଏଇ 'ନ ହେଲେ' ଅର୍ଥଟା ଯେ ଅହଲ୍ୟାଙ୍କୁ ବଡ଼ ଡର ମାଡ଼େ—ନହେଲେ ବୋମା ଫୁଟିବ, କେତେଜଣ ଘାଇଲା ହେବେ, ଆଉ ସାରା ଘରଟା ଯେପରି ତାଙ୍କ

ମୁଣ୍ଡ ଉପରେ ସ୍ୱର୍ଗ ପଡ଼ିବ । ଗୋଟିଏ ନିହାତି ନିର୍ଦ୍ଦୋଷ ଲୋକ ଦୋଷୀ ସାବ୍ୟସ୍ତ ହେବ "ଝିଅଟାକୁ କିଛି ଶିଖାଇ ନାହାନ୍ତି ତା ବାପ ମା କେମିତି, ମୁହଁରେ ପାଣି ନାହିଁ" ଇତ୍ୟାଦି । ଅହଲ୍ୟା ନିଜେ ଡରି ଡରି ଚାଲି ପାରିବେ, କିନ୍ତୁ ସେ କଟୁ ବଚନ ଶୁଣି ସହି ପାରିବେନି ।

ଡର, ଖାଲି ଡର । ଡର ଡରି ଶେଷକୁ ଅହଲ୍ୟାଙ୍କର ଡର ଏପରି ଅସ୍ଥି ମଜ୍ଜାଗତ ହୋଇଯାଇଛି ଯେ ଆଉ କେବେହେଲେ ତାଙ୍କ ମୁହଁରୁ ଜୋରରେ କହିବାର କିଏ ଶୁଣିନି । ନିଜର ପସନ୍ଦ ଆଉ ନାପସନ୍ଦକୁ ପଚ୍ଚୁଛି ବା କିଏ ?

ଶାଶୁଘରେ ଜବରଦସ୍ତ ପର୍ଦ୍ଦା । ଅନେକ ସମୟରେ ମ୍ରିୟମାଣ ହୋଇପଡ଼ନ୍ତି ଅହଲ୍ୟା । ସେଦିନର ସେ ରାତି ସେ ଦିନ କିପରି ଯେ କଟେ ସେ ଅହଲ୍ୟା ହିଁ ଜାଣନ୍ତି । ସେଇ ନିଜ ଭିତରେ ଡରର ଭୂତ ନିଜକୁ ଗୋଟିଏ ପଙ୍ଗୁ, ଅଥର୍ବ କରି ଦେଲେ ।

ସେଇ ଡରି ଡରି, ଥରି ଥରି କଥାରେ କହିଲେ "ହଁ, କୁହ ସପନବୋଉ" । ସେତେବେଳକୁ ଗାଁ ଦାଣ୍ଡ ପାରି ହୋଇ ଗାଁ ଗୋହିରୀ ତଳକୁ ପଶିଲେ । ଅହଲ୍ୟାଙ୍କ ଗୋଡ଼ ମକଚି ହୋଇଗଲା । ତଥାପି ରାତି ପାହି ନଥାଏ । ରାତି ଜାଙ୍ଗୁଳୁ ଜାଙ୍ଗୁଳୁ ଥାଏ । କେଉଁଠାରେ ବାଉଳାରେ କାଉ ସାଥିରେ କୁମ୍ଭାଟୁଆ ଆଉ କକୁଲିପାତିର ମିଳିତ ସ୍ୱର ସ୍ୱନ ଭାସି ଆସୁଥାଏ । ଆଖିଆଗରେ ବରଗଛ ଦୁଇଟି ବଡ଼ ଭୟଙ୍କର ରୂପ ଧାରଣ କରିଥାନ୍ତି । ମନ ଭିତରେ ଡରର ଦ୍ୱିଗୁଣ ଭୟ ମାଡ଼ିଆସୁଥାଏ । ସପନ ବୋଉର କଥା କାନକୁ ଯାଉଥାଏ କି ନାହିଁ ଜଣା ନାହିଁ । ଅହଲ୍ୟା କିନ୍ତୁ ଭାବୁଥିଲେ ଯେ ଏହି ବରଗଛ କାଟି ଦେଇ ଫେରି ଘରକୁ ଫେରିବାକୁ ହେବ-- ।

ସପନ ବୋଉ ବଡ଼ ଆଗ୍ରହରେ କହିଚାଲିଛି, "ସାନ୍ତାଣୀ ଏଡ଼ା ହେଲା, ତୁମ ଖଲାରେ ଯେଉଁ ଉପ କାମ କରନ୍ତି—ତାରି ଗୋଟେଇଁ ବାପର ବହୁତ ଧନ ସମ୍ପତ୍ତି ଥିଲା । ଲୋକବାକ, ଧନ ସମ୍ପତ୍ତିରେ ସତେ ଯେପରି ସେ ଘରେ ଲକ୍ଷ୍ମୀ ଉଭା ହୋଇ ଥିଲେ । କାଳକ୍ରମେ ସବୁ ଗଲା । ଏବେ ସେ ଖଟିଖିଆ ହେଲାଣି । ହେଲେ ତାଙ୍କର ଘରେ ଗୋଟିଏ ବୋଲି ଝିଅ ଥିଲା । ସାତ ପୁଅରେ ଗୋଟିଏ ବୋଲି ଝିଅ । ସେତେବେଳେ କାଳ ତ ଅଲଗା—ବାଳୁତ ବିଭାଘର କରୁଥିଲେ । ସେ ଝିଅଟି ବର୍ଷ ହୋଇଥିଲା ପାଖ

ଗାଁର ଏମିତ ଗୋଟିଏ ଚଳନିବାଲା ଘରେ । ସେ ବାପଘରକୁ ଆସିଥାଏ ପୁଆଣିହୋଇ ସିଢ ହୋଇ । ନିଆଁ ଆଣିବାକୁ ପଡ଼ୋଶୀ ଘରକୁ ଯାଇଥିଲା । ତାକୁ ମାରିଦେଇ ତା'ର ଗହଣାଗାଣ୍ଠି ନେଇଗଲେ । ତାକୁ ବାହାରେ କିଛି କଲେ ଧରାପଡ଼ିବ ବୋଲି ଗାତ ଖୋଳି ପୋତି ଦେଇ ତା ଉପରେ ଚୂଲି ପାରି ଭାତ ରାନ୍ଧି ଖାଉଥାନ୍ତି । ଏ କଥା କ'ଣ ଶୀଘ୍ର ଧରାପଡ଼ିଲା କି ! ଗଲା ତିନି ମାସ ଧରି ଖୋଜାଖୋଜି ଚାଲିଲା ।"

ସେତେବେଳେ ତ ପୁଲିସ ନଥିଲେ—ତିନିଖଣ୍ଡ ମୈଳା ପାର ହେଲେ ଆସିବେ । ଗୋଟିଏ ଗ୍ରେଷ୍ଟ ପାର୍ଟି । ସେଇଠୁ ପୁଲିସ ଆସିଲେ, ଖୋଜିଲେ ପାଇଲେନି କିଛି । କେତେ ପଚରାଉଚରା ହେଲା । ଫଳ କିଛି ହେଲା ନାହିଁ । ସେତେ-ବେଳେ ବାଳଦାର ଥିଲେ । ସେ ପରା ଧରିଲେ । କନ୍ଦା ଧାଡ଼ି ବାନ୍ଧି ମୁହଁରେ ମାଂସ ଧରି ଯାଉଥିଲେ । ପରୀକ୍ଷା କରି ଦେଖିଲେ ଯେ କନ୍ଦା ଧାରେ ଚୂଲି ଭିତରୁ ବାହାରି-ଛନ୍ତି । ଖୋଳା ହେଲା, ଧରା ହେଲେ । ସୁନା ଟେକେଇଏ ହେବ ପିନ୍ଧିଥିଲା, ସବୁ ମିଳିଲା । ଝିଅ କିନ୍ତୁ ମିଳିଲା ନାହିଁ । ଅହଲ୍ୟା ବାବା ହୋଇ କହିଲେ, "ସତେ, ଏତେବଡ଼ ଘଟଣା !" ତା କଥା ଭିତରେ କେତେବେଳେ ଆସି ଗାଁ ମୁଣ୍ଡରେ ପହଞ୍ଚିଗଲେଣି ଜଣା ନାହିଁ । ଏହିପରି ପ୍ରତ୍ୟେକ ଦିନ ଗୋଟାଏ ଗୋଟାଏ କଥା ଶୁଣାଏ ସଧନବୋଉ । ବଡ଼ ମଜ୍ଜା ଲାଗେ ଶୁଣିବାକୁ । ଝିଙ୍କିଶାଳରୁ ଢେଙ୍କାନାଳ ଯାଏ ।

ସେ ତା'ର ନୂଆ ସାନ୍ତାଣୀକୁ ଖୁବ ଭଲ ପାଏ । ଲୁଚି ଲୁଚି କେତେ କଥା ମାଗେ, ହଳଦୀ ଲଗାଇ ଦେବ ବୋଲି କୁହେ । ଅହଲ୍ୟା ଯେ ରୂପରେ ଯେପରି ଥିଲେ ଗୁଣରେ ସେପରି ଥିଲେ । ଏ ଅହଲ୍ୟା କ'ଣ ଶାପମୁକ୍ତ ଅହଲ୍ୟା କି ? ଅହଲ୍ୟାଙ୍କ ଶାଶୁ କୃତ କୃତ ହୋଇ ଯାଉଥିଲେ । ଯେ କି ଏପରି ଏକ ରୂପବତୀ, ଗୁଣବତୀ ବୋହୂ ଭାଗ୍ୟରେ ଥିଲେ, ଏପରି ଲକ୍ଷ୍ମୀ ପ୍ରାପ୍ତ ହୁଅନ୍ତି । ଲକ୍ଷ୍ମୀ ନୁହେଁ ତ ଆଉ କ'ଣ ? ଘରକୁ ତ ସୁନ୍ଦର ଏପରି ଘରଣୀ । ବେଳେବେଳେ ଗୋଡ଼ ମୋଡ଼ିଲାବେଳେ ବୁଢ଼ୀ ସଧନ ବୋଉକୁ ପଚାରନ୍ତି "ଆଲେ, ସଧନ ବୋଉ, ଖୁଣ୍ଟ ପରି ଠିଆ ହୋଇଛୁ କ'ଣ ? ପିଲା ବୋହୂ--ତା ହାତଟିରେ ବା କେତେ ବଳ ଅଛି, ତୁ ଘଷି ଦେଉନୁ" ବୁଢ଼ୀ ପଚାରନ୍ତି । ଶାଶୁ ଶ୍ରଦ୍ଧାରେ ନା ଦେଇଛନ୍ତି ଲକ୍ଷ୍ମୀ । ସାକ୍ଷାତ ଲକ୍ଷ୍ମୀପରି ଘରେ ବଡ଼ ବୋହୂ "ସିବୁଟି, ସିବୁଟି ଲୋ, ମୋ ପାନ ଡବାଟା ଦେବୁ, ବୁଢ଼ି ଡାକି ପକାନ୍ତି ।" ଅହଲ୍ୟାଙ୍କୁ ଯେପରି ସେ ଝିଅ ଆଖିରେ ଦେଖନ୍ତି ସେପରି ସ୍ନେହ ମଧ

ଫେରନ୍ତି । କୁଟୁମ୍ବ ଘର—ତିନି କୁଟୁମ୍ବ ଏକାଠି । ଏହି ଅହଲ୍ୟା ହେଲେ ପ୍ରଥମ ବଡ଼ ବୋହୂ । ସେଥିପାଇଁ ସମସ୍ତଙ୍କର ଆଦର କିଛି କମ ନୁହେଁ ।

ଯେତେବେଳେ ଯେମିତି ଅହଲ୍ୟା ଦେଖନ୍ତି ବନ୍ଧୁଘର ବର୍ଷେ ପରେ ବି ଗାଁ ଝିଅ ବୋହୂ, ବୋହୂ ଦେଖି ଆସନ୍ତି । କୌତୂହଳ ହୋଇ ଜିନିଷ ଦେଖନ୍ତି । ଶାଢ଼ି, ଗହଣା, ବାସନକୁସନ ଦେଖି ପ୍ରଶଂସା କରନ୍ତି ।

ଏହି ଦେଖିବା ଭିତରେ ଅନର୍ଥ ବି ବାହାରେ । ଅହଲ୍ୟା ଶୁଣନ୍ତି—ଅଭିମାନରେ ଝିଅମାନେ କୁହନ୍ତି "ବଡ଼ଭାଇ ବୋହୂ କେତେ ଜିନିଷ ବାପଘରୁ ଆଣିଛି, ଆମକୁ ଯଦି ସେତିକି ଦେବେ ତ ଆମେ ବାପଘର ମାଡ଼ିବୁ, ନହେଲେ ଏଇଠାରେ ମରିବୁ ପଛେ ବାପଘରକୁ ଯିବୁନି ।"

ଶାଶୁମାନେ ବୋହୂକୁ ଉଲୁଖୁଣା ଦେଇ କହିଲେ ଯେ "ମଲ, କ'ଣ ବଡ଼ ବୋହୂ ପରି ଧନ ଦରବ ଆଣି ମୋ ଘରେ ଭରି ଦେଇଛୁ ଯେ, ଦମ ଦମ ଗୁଲୁଛୁ । ମୁହଁ ଛଆଡ଼ି କଥା କହୁଛୁ । ମୁଁ ଦେଖିବି, ମୁଁ ଶୁଣିବି !! ମୁଁ ତୁମକୁ ତଡ଼ିବି !" ଏହିପରି ଗାଁର କେତେ ଚୁପ୍‌ଚାପ୍ କଥା ଅହଲ୍ୟାଙ୍କ କାନରେ ପଡ଼େ । କିଛି ସମୟ ପାଇଁ ଅହଲ୍ୟାଙ୍କ ଗୁଡ଼ ଫୁଲ କୁଣ୍ଡେମୋଟ ହୁଏ । ଆଗେ ସେତେବେଳେ ତ ପୁଅ ଝିଅ ତ ଏତେ ପାଠ ପଢ଼ୁ ନଥିଲେ । ଯେଉଁ କୋଇଁ ବାପା ଖୋଜୁଥିଲେ ସେ ଥିଲେ ମାହାନ୍ତି କୁଳର ବଡ଼ ପାଠୁଆ । ବହୁତ ଖୋଜି ଖୋଜି ଘର ବର ବାଛି ଝିଅକୁ ବାହା ଦେଇଥିଲେ । ସେତେବେଳର ବରିଞ୍ଚି ନାରାୟଣ ଆଉ ଆଜି ଭିତରେ ବହୁତ ତଫାତ୍ । ଆକାଶ ପାତାଳର ବ୍ୟବଧାନ ।

ଗୋଟି ଗୋଟି ହୋଇ କେଜାଣି କେତୋଟି ବସନ୍ତ, କେତୋଟି ଶୀତ, କେତୋଟି ବର୍ଷା କଟି ଗଲାଣି ତା'ର ଠିକଣା ନାହିଁ । ବର୍ତ୍ତମାନ ବରିଞ୍ଚି ନାରାୟଣ କୋଠିପଡ଼ା । ଯେଉଁ ଘରେ ଦିନେ ଅହଲ୍ୟା ପାଦ ଦେଇଥିଲେ ସେ ଘର ଥିଲା ମଧ୍ୟବିତ୍ତ ପରିବାର । ଯାହାର ଉଠି ଉଠି ଏତେ ବାଟ ଆସିଲା ପରେ—ତଳକୁ ଚାହିଁଲେ ଆଶ୍ଚର୍ଯ୍ୟ ଲାଗେ ଅହଲ୍ୟାଙ୍କୁ । ଆଉ ଆଜି ବୁଢ଼ୀଙ୍କର ଦେହାନ୍ତ ହୋଇଛି । କିନ୍ତୁ ତାଙ୍କର କଥା ମନେ ପଡ଼ୁଛି । ସେ କହନ୍ତି "ସତେ ତ, ଲକ୍ଷ୍ମୀ ଗୋଟିଏ ଗୃହଲରେ ଗଢ଼ା ବୋହୂ ।"

ଦାଣ୍ଡରେ କାର୍ ଧୂଆଁ ହୋଉଛନ୍ତି । ବଡ଼ାଲୁ କୋଠା ଟେକି ଚଳନ୍ତି । ଅଦ୍ଭୁତ କଥାଟା ଆଖିରେ ପଡ଼େ ନାହିଁ । କିନ୍ତୁ ଅହଲ୍ୟାଙ୍କର ମନେହୁଏ "ଏ ଧନ, ଏ ଦୌଲତ, ଏ ଝକଚମକର ମାନେ କ'ଣ ? ସ୍ନେହରୁ ଦୂରେଇ ଯିବା ?" ଏପରି ଅବାନ୍ତର ପ୍ରଶ୍ନ ମନକୁ ଆସେ । ସାଗର ଆଉ ନଦୀର ସଙ୍ଗମକୁ ମତବାଦର ବିଚ୍ଛିନ୍ନତା— ବିଚ୍ଛିନ୍ନତା କରେ ସୌରଭ । ଗୋଟିଏ ଅନେକ ଦିନ ଧରି ଫୁଟି ଆସିଥିବା ବାଞ୍ଛିତ କୁସୁମର ସୁବାସର—ଆଦର ସ୍ନେହର କଥା ବଡ଼ ହୃଦୟସ୍ପର୍ଶୀ । ଆଉ ଅବସାଦର ଇତି କଥା ।

ଅତୀତର ଗୋଟିଏ ଗୋଟିଏ ରୂପାନ୍ତର ଜୀବନରେ କୋଟିଏ ଯୁଗର ବାହନା ଯେପରି ଭରେ—ଆଉ ନବେଲା ସମୟରେ ନବେଲା ଆବେଶ ମନେ ପକାଏ । ସବୁ କିଛି ସତେ ଯେପରି ବହୁ ଦୂରରେ ହଜାଇ ଆସିଥିବା ଗୋଟିଏ ଗୋଟିଏ ବହୁ ମୂଲ୍ୟ ଆଉ ବହୁ ଆଦରର ବାଞ୍ଛିତ ନିଧି । ତାକୁ ଖୋଜେ ଉଦଲା ମନରେ—କେତେ ଦରଦଭରା ବର୍ଷାର ଧାରା ଆଖିରେ ଭରି । ଏଣୁ ନିତି ଖେଳାଭୂମିରେ ଖୋଜେ ସେ ଅତୁଳ ସ୍ମୃତି ବିଜଡ଼ିତ ଦିନ ଗୁଡ଼ିକୁ । ଯାଉଁଟେ ତା'ର ମନର ଅରମା ବଣରେ—କେତୋଟି ମଉଳା ପଡ଼େ, କେତୋଟି ଉଜ୍ଜ୍ୱଳ ଆଶାର କିରଣ ଢାଳି ମନକୁ ଶାନ୍ତ କରେ ।

ଆଜି ଚଲାବାଟର ଅଧରେ କାହାର ଭେଟ ପାଏ ନାହିଁ, ଅନେକ ସମୟରେ ଅନେକ ପରିବେଶରେ । ଅନେକ ତା'ର ସ୍ମୃତି ପରିଚ୍ଛିଟରେ, ସମୟର ସ୍ତୂପ ଭିତରୁ ଖୋଜିଛୁ ପାଇନାହିଁ, ତୃପ୍ତି ଆଉ ଶାନ୍ତିର ସେ ଗୋଟିଏ ଅପ୍ରଶମିତ ଜ୍ୟୋତି । ଗୋଟିଏ ମନର ଶ୍ରେଷ୍ଠ ଆଶା ।

ଆଜି ମୈନା ଡାକେ, ଦୂର ପାହାଡ଼ ବଣର କୋଳରେ । ଆଜି ବି ଚେଗିରେ ପିଜୁଳି, ଡାଳିମ୍ବ ପାଚେ ଗଛରେ । କିନ୍ତୁ ସେଦିନ ଭଳି ପଲଙ୍କ ବାଡ଼ରେ ପାଚେ ନାହିଁ ।

ଗୋଟିଏ ମାତୃତ୍ୱର ସ୍ନେହର ଝଲକ ଜଗାଇ, ମନରେ ଉଠେ ସ୍ୱପ୍ନର କାଉଁରୀ ଦେଶରେ, ବିଚରଣ କରିଲା ପରି ମନେହୁଏ । ସେଇ ହସିଲା ଖେଳିଲା ଦିନର ପିଲାଖେଳ, ଅଟ୍ଟ, ଧୂଳିଖେଳ । ପିଲାଦିନର ଝିଲମିଲ ତାରାର ଦେଶରେ, ଗୁହ ପରି ସୁଠାମ ଠାଣିରେ, ଶୋଇ ରହିଥିଲେ ଏଇ ସେ ଶ୍ରେଷ୍ଠ ଅହଲ୍ୟା ।

ମଥାରେ ହାତ ଥାପି ଥାପି ଆଉଁଷୁଥିଲେ କବିର ଭକ୍ତଙ୍କ ସ୍ତ୍ରୀ—ଆଉ ସ୍ନେହରେ କହୁଥିଲେ "ଶୋଇପଡ଼ ମୋର ରାଜଦୁଲାରୀ—ଶୋଇପଡ଼ ମୋର ସପନ ପରୀ । ପରୀ ରାଇଜକୁ ଯିବୁ—କେତେ ରଜା ପୁଅ ଦେଖିବୁ । ସୁନାନାକି ଆମ ରାଜଦୁହିତା, ହାତରେ ଧରିବ ଫୁଲର ଫିତା, ଟାଣିବ ଘୋଡ଼ା, କରିବ ଛୁଡ଼ା ।" ମନ କେଉଁଠି ସେତେବେଳେ ପରୀ ରାଇଜରେ ବିଚରଣ କରୁଥିଲା ।

ଆଉ ଟିକି ଅହଲ୍ୟା ଜାଣିପାରୁ ନଥିଲେ ସେ ତାଙ୍କର ଜିଦ୍ କରି ଧୂଳିରେ ଗଡ଼ିବା, ଘରର ପୂଟାଣି ଗୋଡ଼େଇ ଗୋଡ଼େଇ ବୁଲାଉଥିଲେ, ସମ୍ଭାଳିବାକୁ ଧାଉଁଥିଲେ । କବିର ଭକ୍ତଙ୍କ ସ୍ତ୍ରୀ ଯେ କ'ଣ ପାଇଁ ବୁଝାଉଥିଲେ, ଝୁଲାଉଥିଲେ, ଶୁଆଉଥିଲେ ସେ କଥା ଅହଲ୍ୟାଙ୍କ ପାଖେ ବୁଝିବା ଥିଲା ଦୁରୂହ । କିନ୍ତୁ ସେ ଯିଏ ହେଉନା କାହିଁକି ଅହଲ୍ୟା ଜିଦ୍ କରି ହଇରାଣ କରୁଥିଲେ । ବଡ଼ ସିମେଣ୍ଟ ଅଗଣାଟାରେ କାଖରେ ଧରି କହୁଥିଲେ, "ଆ, ମା'ଟାଲେ ମୋର ଖାଇଦେ । ହେଇଟି ମୁଁ ଆଖି ବୁଜିଦେଇଛି, କିଏ ଖାଇଲା ? ସାରୀ ଉଡ଼ିଆସି ଖାଇଦେଲା—ଖାଇଦେଲା" ଟିକି ଅହଲ୍ୟା ପାଟିରେ ଭାତ ପୂରାଇ ଚାହାନ୍ତି—ସାରୀ କାହିଁ—ପଞ୍ଜୁରିରେ ଡାକୁଛି "ଅଲଲ୍ୟା"—"ଅହଲ୍ୟା । ସାରୀ ଦୋଳି ଖେଳୁଛି ପଞ୍ଜୁରିରେ—ପଞ୍ଜୁରି ହଲୁଛି । ସାରୀ ହଲୁଛି । ଅହଲ୍ୟା ହସି ଉଠୁଥିଲେ ଖିଲ୍‌ଖିଲ୍ । କ୍ଷଣକ ପାଇଁ କବିର ଭକ୍ତଙ୍କ ସ୍ତ୍ରୀ ଭୁଲିଯା'ନ୍ତି ଏହି ଅହଲ୍ୟା କିଏ ? ତାଙ୍କର ବନ୍ଧୁଙ୍କ ଝିଅ ନା ନିଜ ଝିଅ ? ସେ ତାଙ୍କର ବିରାଟ ଧନ, ସମ୍ପତ୍ତି—ଚାକର ବାକର--ଘରଦ୍ୱାର—ସବୁ ଜିନିଷ ଭିତରେ ନିଜକୁ ଏକୁଟିଆ ମନେ କରନ୍ତି । ତାଙ୍କର ସେ ବିରାଟ ଜମିଦାରୀ, କୁବେର ସମ୍ପତ୍ତି ତୁଚ୍ଛ ଲାଗେ । ସେ ଭାବନ୍ତି ସେଇ ବିରାଟ ଐଶ୍ୱର୍ଯ୍ୟ ଭିତରେ ବୁଡ଼ାଇ ରଖିବାକୁ ଏହି ଟିକି ଅହଲ୍ୟାଙ୍କୁ । ଆଉ ତାଙ୍କର ସେ ବଡ଼ ଅଗଣାର କୁଣ୍ଡରେ ଗୋଲାପ ସାଇତିଲା ପରି ଏ ଟିକି ଅହଲ୍ୟାଙ୍କୁ କୋଳରେ ଧରି ଭୁଲିଯିବାକୁ ସବୁକିଛୁ । ଶୂନ୍ୟ କୋଳ ତାଙ୍କର ସତେ ଯେପରି ପୂରିଉଠିଛି ଅହଲ୍ୟାଙ୍କ ପାଇଁ । ଅହଲ୍ୟା ଯେ ତାଙ୍କର ନୁହେଁ ଏକଥା ସେ ଭୁଲିଯା'ନ୍ତି ।

ଗୌତମ ବାବୁ, ଭକ୍ତଙ୍କ ସ୍ୱାମୀଙ୍କୁ, ବାଉଜି ବୋଲି ଡାକନ୍ତି । ଭକ୍ତ ଆଉ ଗୌତମ ଦୁଇଜଣଯାକ ବାଲ୍ୟ ବନ୍ଧୁ—ସନ୍ଧି ବସିଛନ୍ତି । ଗୌତମ ଆସନ୍ତି । ଘର ଭିତରକୁ ପଶିଯା'ନ୍ତି ବିନା ଦ୍ୱିଧାରେ—ବିନା ସଂକୋଚରେ । ବଡ଼ ଅନୁନୟ କରି କୁହନ୍ତି ଅହଲ୍ୟାଙ୍କୁ, ଘରକୁ ନେବାକୁ ଟିକେ—"ତା' ମା ଦେଖିବାକୁ ବ୍ୟସ୍ତ ହେଉଛି । ମୁଁ ଘଣ୍ଟାଏ ପରେ ଛାଡ଼ିଦେଇ ଯିବି ।"

ଗୌତମ ଖୋଜନ୍ତି—ଅହଲ୍ୟା ଆଖିରେ ପଡ଼େନ । କେଉଁ ମେଘ ଭିତରେ ଭଣ୍ଡଙ୍କ ସ୍ତ୍ରୀ ଲୁଚାଇ ରଖିଛନ୍ତି, ଛାଡ଼ିଦେବେନ ବୋଲି ।

ଏହି ପ୍ରଶ୍ନବାଚକ ଚିହ୍ନ ଯେପରି ଚିହ୍ନରେ ରହିଯାଏ । ଅହଲ୍ୟା ଯେପରି କାହାର ନୁହେଁ । ନା ସେ ଗୌତମ ବାବୁଙ୍କର—ନା ସେ ଜବର ଭଣ୍ଡଙ୍କର । ସେ ତ ଜଣେ ତୃତୀୟ ଲୋକର । ଯାହା ଅଗଣାରେ ଫୁଲ ହୋଇ ଫୁଟିଛି ଆଉ ଜଣେ ଫୁଟିବା ଫୁଲକୁ ଆଦରରେ ନେଇ ଆସିଲା ଅନ୍ୟ ଜଣଙ୍କ ବଗିଚାକୁ ।

ହସ, ଧୂଳି ଖେଳ ପରିବର୍ତ୍ତେ ସମାଜର କଠୋର ନିୟମ କୁଠାରାଘାତ କଲା । ଗୁଡ଼ାଏ କପଣ, ଗୁଡ଼ାଏ ବୋଝର ଗୁରୁ ଦାୟିତ୍ୱର ଭାର ବୋହି ବୋହି ଅଣନିଶ୍ୱାସି ହୋଇଗଲା ବେଳେ ମନେପଡ଼ିଲା ଅତୀତ—।

ଫୁଲ ମୁକୁଟ ଶୋଳର ନୁହେଁ—ପଥରର । ପଥରଠୁଁ ଭାରି । ବଜ୍ରଠୁ ବି କଠିଣ । ତା'ର ରୂପ, ଭର୍ତ୍ତାଙ୍କର ଆଜ୍ଞା ପାଳନ । ବଡ଼ କଠିନ, ବଡ଼ ଦୁର୍ବହ···।

ଗୋଟିଏ ଦରଫୁଟିଲା ଫୁଲ କଳିର ଜୀବନ କାହାଣି । ଆଉ ମରୁ ଉଦ୍ୟାନର ହସିଲା କାହାଣୀ । ସେ ଯେପରି ଉଦ୍ୟାନରେ ଫୁଟିବାକୁ ଚାହେଁ । ଶ୍ରେଷ୍ଠ ବଡ଼ ତାର ଖିଆଲ ନାହିଁ—ତା'ର ସୁବାସ ଛୁଟାଇ ଦେବାକୁ ଚାହେଁ । ଗନ୍ଧ ବୁଣି, ରୂପ ମହକାଇ ଲୋଟି ଯିବାକୁ ଚାହେଁ । ଯେପରି ନ ଫୁଟି, ନ ହସିଲେ ତା'ର ଜୀବନ ନିରର୍ଥକ ହୋଇଯିବ । ଜୀବନରେ ଜୀବନ ରହିବ ନାହିଁ । ସେ ହସି ହସାଇବାକୁ ଚାହେଁ—ଲୋଟି ଲୋଟାଇବାକୁ ଚାହେଁ—ନ ପାଉ ଆଦର, ନ ପାଉ ସ୍ନେହ । ହସି ହସାଇବାରେ ତ ଅଛି ମହତ୍ତ୍ୱ—ବିଶେଷତ୍ୱ । ଅବାଞ୍ଛିତ ହୋଇ ପାରେ, ଅନାଦର ହୋଇ ପାରେ, କିନ୍ତୁ ସୁରଭିଦାୟିନୀ ହେବା ଦରକାର ।

ଅଗତ୍ୟା ସେଇ ଢେଇଦାନର ବନ୍ଧୁ ହୋଇଥିଲା ସିନା—ଅବହେଳାରେ, ଅଜାଣତରେ କାହା ଅଗଣାରେ ନଜର ଅନଚ୍ଛାରେ ରହିବା ପାଇଁ···।

କିନ୍ତୁ ସେଇ ବାଳୁତ ଅହଲ୍ୟାକୁ ଯେତେବେଳେ ମନେ ପକାଇଲେ ସେତେବେଳେ ବହୁତ ଡେରି ହୋଇଯାଇଥିଲା—ଗୋଟିଏ ବହୁତ ଆପଣାର ସ୍ମୃତିଟିକୁ ଯେ ଛାଡ଼ି ଆସିଛନ୍ତି ନଜର ଅଲକ୍ଷରେ । ମନରେ ଶୋଚନା ଆସେ, ମନରେ ଦୁଃଖ ଆସେ, ମନରେ ଅବସାଦ ଆସେ ।

ସାତ୍ତାର ଚଲା ବାଟରେ ଏତେ ବାଟ ଆସିଲା ପରେ ପଛକୁ ଚାହିଁଲେ ହଠାତ୍, କେତେ ପଛରେ ପକାଇ ଆସିଛୁ ପିଲା ବୟସର ଅଭୁଲା ସ୍ମୃତିକୁ" । ଆସିଥିଲେ ତ ଖୋଜିଲେ ନାହିଁ । କାହିଁକି ? ସେ କ'ଣ ଭୁଲିଗଲେ ନା ବାପା ବାହାଘର କରି ଦେଲେ ବୋଲି ଅପଢ଼ା ହୋଇଗଲା । ମନରେ ଅନେକ ପ୍ରଶ୍ନ—ଅସରନ୍ତି ଉଦ୍‌ବେଳିତ ହେଉଥିବା ଭାବନା । "ଏହିକ୍ଷଣି ପକ୍ଷୀ ହୋଇ ଉଡ଼ିଯାନ୍ତି କି ? ମୁଁ ଦେଖି ଆସନ୍ତି ମୋର ସ୍ନେହର ବାପା-ବୋଉଙ୍କୁ—କହି ଆସନ୍ତି ମୋର ଯେତେ ଦୁଃଖ, ଯେତେ ଆପତ୍ତି ଆଉ ଅଭିଯୋଗ ।"

ସେଇ ଅଭୁଲା ସ୍ନେହ ମମତାର ବାଉଁଶରେ ଯାହାକୁ ବଢ଼ାଇ ଆଣିଥିଲେ ତା ମନରେ ଯେ ସେ ଅଭୁଲା ବେଳର, ଅଭୁଲା ଆଙ୍କର ଚେର ମାଡ଼ି ଯାଇଛି । ସେ କେବେ ତ ଖୋଜିବ । ତା'ର ପ୍ରଶ୍ନ କାହାରି ପାଖରେ ନାହିଁ । କେହି କହି ପାରୁନାହାନ୍ତି । ସେ ସ୍ମୃତି ଯେପରି କାହାରି ଦରକାର ନାହିଁ । ଅଦରକାରୀ ଅହେତୁକ ସ୍ୱପ୍ନ ପରି ରାତିରେ ଆସି ସକାଳେ ଉଭେଇ ଯାଇଛି । କିନ୍ତୁ କଣୋଭି ଅହଲ୍ୟା କାହା ଘର ମଣ୍ଡନ କରି ଶୋଭା ପ୍ରକାଶ କରୁଥିଲେ ମଧ୍ୟ ହଟେ ହଟେ ଏକାନ୍ତ ଏକଲା ବେଳର ପରିବେଶ ମନକୁ ଉତଲା କରେ ।

ମନ ଚାହେଁ ଉଡ଼ି ଯିବ—ଉଡ଼ି ଯିବ ବହୁତ ଦୂରକୁ, ଯେଉଁଠି ହଜି ଯାଇଛି ମଧୁର ସ୍ମୃତିଟି—ନଈର କ୍ଷୀଣ ଆଉ ନିର୍ମଳ ପବନ ଝର ପରି ବୋହି ଯାଉଥିବା ଶିଶିର ସ୍ନିଗ୍ଧ ଧାର ପରି । ମନରେ ସ୍ନିଗ୍ଧ ସଞ୍ଚାର କରେ—କ୍ଷଣକ ପାଇଁ ମନ ପୁଲକିତ କରେ । କାହିଁ ସେ ଅବେଳାର ଗୋଟିଏ ଅହେତୁକ ଲଗ୍ନ ଖୋଜି ପାଏ ନାହିଁ । ଗଛରେ ଫଳ ପାଚିଲେ, ଦୂରରେ ଶାରୀ ଡାକିଲେ ସେଇ ସ୍ମୃତିର ଜାଗରଣ—ସେଇ ସ୍ମୃତିର ବିଚ୍ଛେଦ ଯେପରି ନଦୀ ଆଉ ସମୁଦ୍ରର ସଂଗମର ବିଚ୍ଛେଦ ପରି ମନେ ହୁଏ । ଖୋଜେ ସେ ଅଲଣା ହାଟରେ—ପଲଙ୍କ ହାଡ଼ରେ । ଆମ୍ବ, ଡାଳିମ୍ବ ପାଚିବା—ମୁଣ୍ଡ ଉପରେ ପିଞ୍ଜରାରେ ଶାରୀ ଡାକିବା... ।

ସ୍ୱପ୍ନ ରାଇଜର ପରି କାହାଣୀ ନୁହେଁ ତ । ଭୂତାତ୍ମ ରାଜ୍ୟର ଭୂତାତ୍ମ କାହାଣୀ ଲେଖିବାକୁ ଗଲାବେଳେ ଦ୍ୱିତୀୟ କାହାଣୀ ବାଧା ହୁଏ । ମନ ଖୋଜେ ଦ୍ୱିତୀୟ—ସ୍ନେହ ଆଦରର ଟିକି ଅହଲ୍ୟାଟି କିପରି ଅଙ୍କଟ ହୋଇ ଗଡ଼ିଯାନ୍ତି ଭୂଇଁରେ ଆଉ ସ୍ୱପ୍ନର ମା କିପରି ସେ ଅଳି ଜଞ୍ଜାଳକୁ ନିଜ ପଣତରେ ଆଦରରେ ସାଇତି

ଲେଖନ୍ତି—ଆଜି ଏ ଜୀବନରେ କେତେ ବର୍ଷ ଝୁରିଲେ କେଉଁଠି ପାଉନାହିଁ... ପାଉନାହିଁ ।

ସେଇ ଅନାବିଳ ସ୍ନେହ ଆଦରକୁ ନିରୁତ୍ସାହ ଆଦରହୀନ ଜୀବନରେ କେତେ ଖୋଜୁଛି—ଅବହେଳ ଲଗ୍ନରେ ଝୁରୁଛି । ଖୋଜି ଖୋଜି ହାଲିଆ ହୋଇଗଲେ ବେଳେ ନିରୁତ୍ସାହ ମନ ବେଦନାରେ ଅତିଷ୍ଠ ହୋଇ ଉଠିଲେ ସମୟରେ ଧରନ୍ତି କଲମ ଆଉ କାଗଜ । କାଗଜ କାଳିର ସମାବେଶରେ କ୍ଳାନ୍ତିବୋଧର ସାନ୍ତ୍ୱନା ବିତୃଷ୍ଣା ମନକୁ ହାଲ୍‌କା କରି ତୋଳିବାକୁ—ସେଇ ଅଭୁଲା ଅଳିଆ ସ୍ମୃତିକୁ ବଳିତା କରି ଜାଳିବାକୁ । ଆଉ ସେଇ ବ୍ୟଥା ଭରା ଉଦ୍ଦାମ ପିପାସାକୁ କରୁଣ କାହାଣୀରେ ତୃପ୍ତି କରିବାକୁ ସ୍ନେହ—ସ୍ନେହ କାଙ୍ଗାଳୁଣି ହୃଦୟର ବିବର୍ଣ୍ଣ ରୂପ ଝର୍ଗ ଯାଇ ହଜିଯାଇଛି ସମସ୍ତ ନଈରେ ।

କେତେବେଳେ ପକ୍ଷୀ ହୋଇ ଉଡ଼ୁଛି ତ କେତେବେଳେ ତରଙ୍ଗ ହୋଇ ବେଳାଭୂମିରେ ମଥା ପିଟୁଛି । ଆକାଶ, ପ୍ରାଣି ପବନ, ବୃକ୍ଷଲତା ସବୁଠି ଖୋଜୁଛି—ଖାଲି ଖୋଜୁଛି ଏଇ ଦିନର ଜଞ୍ଜାଳ, ଘରର ଜଞ୍ଜାଳ । ମନର ଜଞ୍ଜାଳ ଭିତରେ ଲେଖିଛି ସେ ତା'ର ମରୁ ଉଦ୍ୟାନର ଇତି କଥା । ଲେଖୁଛି କାଟୁଛି, ଫେର୍ ଲେଖୁଛି—ପଢୁଛି, ପଢ଼ି ପଢ଼ି ହାଲିଆ ହେଉଛି । ଲେଖି ଲେଖି ବିରକ୍ତ ଆସୁଛି କିନ୍ତୁ ଜମା ସରୁନି । ମରୁ ଉଦ୍ୟାନର ଶୀତଳ କୋମଳ ମଧୁର ଧାରା ମନରେ ଛୁଟିଆସିଛି—ସେଇ ତ ଆନନ୍ଦର ଅତଳ ସମୁଦ୍ର ଭିତରେ ମନ ଲହରୀ ଖେଳୁଛି ।

ବାହାରେ ପଡ଼ିଲା ସନ୍ଧ୍ୟାର ଆବରଣ—ବଟେଶ୍ୱର ନାରାୟଣ କେତେବେଳୁ ଅଫିସରୁ ଫେରି ବାହାର ପେଣ୍ଟିକୋରେ ଅକ୍‌କା ମାରୁଛନ୍ତି । ପୁଅଝିଅ ଗୃହ ଦେଇ ଗଲେଣି । ଏକାନ୍ତ ଭାବେ ଧ୍ୟାନମଗ୍ନ ଥିଲାପରି ଜଣା ପଡ଼ୁଛନ୍ତି—ତାଙ୍କର ସ୍ଥୂଳ ଶରୀରଟି ଇଜି ଚେୟାରରେ ଲେଟାଇ ଦେଇଛନ୍ତି । ବିଜନେସ ଚିନ୍ତା ମୁଣ୍ଡ ଭିତରେ ଘାରୁଛି । ନିହାତି ଦରକାର ନହେଲେ ହିସାବ କିତାବ ହୁଏନାହିଁ । ପିଲାଗୁଡ଼ିକ ଘରେ ଥିଲେ ସବୁ ଗୋଳମାଳ ହୋଇଯାଏ ।

ଆଉ ଅହଲ୍ୟାଦେବୀ ତାଙ୍କର ଚିନ୍ତା ନେଇ ବ୍ୟସ୍ତ । ଅର୍ଦ୍ଧସମାପ୍ତି ପାଣ୍ଡୁଲିପି—ସମସ୍ତ ଖୋଜୁଥିଲେ । ପିଲେ କାହାନ୍ତି—ନଦୀ ଆଉ ସାଗର କେତେ ଦୂର—ଏଇ

ହୃଙ୍ଗା ଧାଁରେ ମିଶ୍ରଣ କେଉଁଠି ଓ କପର ? ଚାହିଁଲେ ବରଞ୍ଚ ନାରାୟଣ । ମନଟାକୁ ଚିନ୍ତାରୁ ଖୁବ୍ ଜୋରରେ ଟାଣିଆଣି ପୁଣି ପେପର ଉପରେ ରଖିଲେ । ଅନ୍ଧାର ସନ୍ଧ୍ୟା ହେବାକୁ ଡେରି ଅଛି । ବାହାରେ ଫୁଲ୍‌ଫୁଲିଆ ପବନରେ ଆଖିକୁ ନିଦ ଆସିଯାଉଛି । ହାତର ପେପର କ୍ଲାନ୍ତ ହାରଣୀ ନିଦ ବଟିକା କହୁଛି ଶୋଇ ପଡ଼, "ଶୋଇ ପଡ଼ ।"

ପବନ ବହୁଛି, ସୌରଭ ମଳୟ ନିକଟର ଅତି ନିକଟରେ—ବାତାୟନର ଧାରେ—ଧାରେ । ଗାଉଛି ସେ ଓମରଖୈୟାମର କେତୋଟି ମଧୁର ଅଭୁଲା ଛନ୍ଦ । ଖୁବ୍ ଜୋରରେ ନହେଲେ ବ—ଧୀରେ—ଖୁବ୍ ଧୀରେ ଧୀରେ । କେହି ନ ବୁଝିଲେ ବୁଝୁଥିଲେ ଅହଲ୍ୟା ।

ଭୁଲିଯାଇଥିବା ସେ ଏକ ଛନ୍ଦ—ସ୍ୱର୍ଗ ଆଉ ସାକିର ବାସନା—ଆତ୍ମଗ୍ଲାନିର ବାସନା । ଚାହିଁଲେ କାନ୍ଥରେ ଟଙ୍ଗା ହୋଇଥିବା ସେ କ୍ୟାଲେଣ୍ଡରଟା । ପବନରେ ବାଡେଇ ହେଉଛି । ମନରେ ସୁଲୁଇ ଦେବାକୁ ଚାହୁଁଛି ତା'ର ସ୍ମୃତି । ବିଚ୍ଛେଦ ମିଳନର ବହୁତ ଦୂରରେ କି ପାଖରେ—କିନ୍ତୁ ଆଖି ପାଏ ନାହିଁ । ସ୍ୱର୍ଗ ପଥ ଗୀତ ଗାଏ—ଜଣେ ବୁଝେ—ଆଉଜଣେ ବୁଝିପାରେନା ବହୁତ କର୍ମଯୁକ୍ତି ଓ କାର୍ଯ୍ୟ ପଟୁତା ଭିତରେ । ଭୁଲିଯାଏ ନିଜର ସ୍ମୃତି—କେଉଁଠି ଓମର ଖୈୟାମର ଦରଦଭରା ରଚନା—କେଉଁଠି ନଳ ନଇର ଉପକଥା—କେଉଁଠି ?

କିନ୍ତୁ ଅସମ୍ଭବ ଅବାନ୍ତରର ଭିତରର ମୋହ କେତେ ରୂପ ନିଏ ଦେଖି ହୁଏନାହିଁ । ସମ୍ଭବର ସତ୍ୟତାଠୁ କେତେ ଦୂରରେ ଆଜି ! ଦେଖନ୍ତୁ ଅହଲ୍ୟା ସତ୍ୟ ଆଉ ସୁନ୍ଦର—ଏଇ ଦୁଇ ମିଶ୍ରଣରେ ଚିର ବାଞ୍ଛିତ କରୁଣାର ଫୁଲ ଝରେ । ମାଟିରେ ଗଛଟି ପୋତି ପାଣି ନ ଦେଇ ଫୁଲ ଫୁଟାଇବାଟା ଆଶ୍ଚର୍ଯ୍ୟର କଥା ନୁହେଁ ତ ଆଉ କ'ଣ ହୋଇଥାଇ ପାରେ··· !!

ଅବାନ୍ତର ଏ ଦୁନିଆ । ଅସମ୍ଭବ ତାର ପରିସ୍ଥିତି ଭିତରେ ଖୋଜେ ନିଜର ଅସ୍ତିତ୍ୱର ରାସ୍ତା । ସତ୍ୟ ଆଉ ସମ୍ଭବର ଅବକାଶରେ ବାରମ୍ବାର ଧକ୍କା ଖାଏ—ପ୍ରତି କ୍ଷଣେ କ୍ଷଣେ··· ।

ଚିନ୍ତାରେ ବାଧା ଦିଏ କବାଟରେ ଟଙ୍ଗା ହୋଇ ଝୁଲୁଥିବା କ୍ୟାଲେଣ୍ଡରଟା—

ସେଇଟା ବି ଧପ୍ ଧପ୍ କରି କବାଟରେ ଆଘାତ ଦିଏ । କ୍ଷଣେ ନିର୍ବୋଳାରେ ବସି ଚିନ୍ତା କରିବାକୁ ଦିଏନି··· ।

ବତାସ ଆସୁଛି । ଆସୁ ! କ୍ୟାଲେଣ୍ଡରର ଆଦ୍ଭୁର ପବନରେ ଦୋଳି ଖେଳି ଖେଳି ବାଡେଇ ହୋଇ ଯାଉଛି—ଯାଉ । ଏକାନ୍ତରେ ଅହଲ୍ୟା କେତେଗୁଡ଼ିଏ ଚିନ୍ତା କରି ଦେବେ ବୋଲି ବସିଥିଲେ—ହେଲାନାହିଁ । ଚିନ୍ତାରେ ବ୍ୟାଘାତ ହୋଇଉଠେ ।

କେତେବେଳୁ ସନ୍ଧ୍ୟା ଘନେଇ ଆସିଲାଣି । ପୂର୍ବାଶ୍ରୀ କ'ଣ ରନ୍ଧାହେବ ବରଦକୁ ଚାହିଁ ବସିଛି । ବଜାରରୁ କ'ଣ ସଉଦା ଆସିବ ମାଳ ପଚାରୁଛି । କେତେବେଳୁ ବିଶ୍ୱନାରାୟଣ ଇଜି ଚେୟାରଟି ଉପରେ ଶୋଇ ପଡ଼ିଲେଣି । ହାତରୁ କାଗଜଟି ତଳେ ପଡ଼ି ପବନରେ ଛଟପଟ ହେବାକୁ ଲାଗିଛି । ଅହଲ୍ୟା କହି ଉଠିଲେ, "ଦେଖ ତା ପରେ ମୋତେ ମୋଟେ ଡାକିବନି—ବୁଝିଲ ।" ପୂର୍ବାଶ୍ରୀ ମୁଣ୍ଡରେ ଉଠିଛି ଝଡ଼—ସେ ଝଡ଼ ଧୂଳି ପ୍ରାନ୍ତର ଉଡାଇ ଦେବାକୁ ଚାହେଁ—ଧୂଳି ଧୂସର ବୈଜୟନ୍ତୀ ଉଡାଇ ଦୁନିଆଁ ଆଖିରେ ଦେଖାଇବାକୁ ଚାହେଁ ତା'ର ପରିବ୍ରାଜକ, ସେ ନିଜେ ।

ଆକାଶରେ ଚାନ୍ଦ ଉଠିଛି । ତାର ସଖି ହସୁଛନ୍ତି—ସେମାନେ ପ୍ରକୃତି କୋଳରେ ଶୋଭାଭରା ହସ ହସୁଛନ୍ତି । କିଏ ସେ ସୁଷମା ଉପଭୋଗ କରୁଛି କି ନା ସେମାନେ ଜାଣନ୍ତିନି—ସ୍ୱତ ତା'ର ନିଜସ୍ୱ ଗତିରେ ଆଗେଇଛି ।

ଯେପରି ଗୋଟିଏ ରାଗିଣୀ ଭୁଲି ଛନ୍ଦ ମନେହୁଏ । ଗୀତ ଯୋଗେ ଛନ୍ଦ—ଛନ୍ଦ ଯୋଗେ ବାଜେଣି—ବାଜେଣି ଯୋଗେ ନୂପୁର । ଏଇ ଛନ୍ଦ, ବାଜେଣି, ନୂପୁର ସବୁ ମିଶ୍ରଣରେ ହୁଏ ଗୀତ । ଆଉ ଗୀତ ତାର ଲଳିତ, ମଧୁର ସ୍ୱରରେ ମୋହିତ କରେ—ଦୁଃଖ ଭୁଲାଇ ଦିଏ । ବ୍ୟଥା ପ୍ରାଣରେ କ୍ଷଣକ ପାଇଁ—ଜଣାଏ ଆନନ୍ଦ··· ।

ଯଦି କିଛି ଅର୍ଥ ନାହିଁ—ଅନର୍ଥ କେଉଁଠି ? ଯଦି ଗୀତ ନାହିଁ ଆଉ ଲେଖା କ'ଣ ? ବ୍ୟଥା ନାହିଁ କି ଆନନ୍ଦ ନାହିଁ । ନାହିଁ ତୋର ମୋରର ଭାବନା—ମାନେ ଏହିପରି ମିଶାମିଶି ।

ମଣିଷ ତ ବଞ୍ଚିବାକୁ ଚାହେଁ ଆଉ ତା'ର ନିଜସ୍ୱ ଗତିରେ । ନିଜର ସବୁ ସମର୍ପଣ ପରେ ଯାହା ରହେ, ତାହା ହିଁ ତା'ର ନିଜର । ସେଠି ଆଉ ଭଲମନ୍ଦ, ସୁଖଦୁଃଖର ପ୍ରଶ୍ନ ଉଠେ କେଉଁଠି ?

ବନ୍ଦିବାକୁ ହେବ ସଂଗ୍ରାମ କରି । ନାଁ—ନାଁ—ସେ ତ ସଂଗ୍ରାମଠୁ ବହୁତ ଦୂରରେ— ତେବେ ଉପାୟ ? ମନକୁ ବୁଝାଇଲେ—ଯାନ୍ତୁ ନାହିଁ, ହଁ ଯାନ୍ତୁ ନା । ନିଜସ୍ୱକୁ ଦାନ କରି । ବୁଝାମଣାର ମତଭେଦ—ନାଁ—ନଦୀର ପାଣି ଉଜାଣି ବୋହିବା . କେବଳ ଯାର ହେବ । ଯେପରି ନଦୀ ବନ୍ଧିଗଲେ ତା'ର ଗତିପଥ ଧରି—ଠିକ୍ ·ନିଜର ପଥ ଧରି ଚାଲିଯିବାକୁ ହେବ··· ବହୁତ ଦୂର, ବହୁତ ଦୂର··· । ସେତେଦିନ ପାରେ.ସେତେ ଦିନ···ସେତେ ଦିନ··· ।

ଦିନ ଦିନ ହୋଇ ପାଣି ଢାଳୁଛନ୍ତି ଋତୁ ସେଇ ଆଦର ଗୋଲାପ ଗଛଟିରେ— ପତ୍ର ଶାଖା ମେଲି ବେଶ୍ ସୁନ୍ଦର ଗୋଲାପ ଫୁଟିଲାଣି । ଯେତେବେଳେ ଯେମିତି ସମୟେ ସମୟେ ବସନ୍ତ ଫୁଲ ସ୍ତବକରୁ ଗୋଟିଏ ଛିଣ୍ଡାଇ ଋତୁଙ୍କ ମୁଣ୍ଡରେ ଖୋସିବାକୁ ଯାନ୍ତି—ଋତୁ ବାରଣ କରନ୍ତି—"ନା, ଥାଉ—ଦେଖିଲ ଗଛରେ ଫୁଲଟି କପରି ଶୋଭି ପାଉଛି । ଏଇନେ ସେଇ ଗଛରେ ଆଠଦିନ ରହିବ । ଛିଣ୍ଡାଇ ଦେଲେତ ସକାଳକୁ ଶୁଖିଯିବ ।" ବସନ୍ତଙ୍କର ହାତ ଫେରିଆସେ—ଫୁଲଟି ସେଇ ସ୍ତବକରେ ଥାଇ ହସେ, ସତେଯେପରି ଋତୁକୁ ଚାହିଁ ।

ଏହି ଦୁର୍ଗାପୁର ଇସ୍ପାତନଗରୀ । କେତେକେତେ ପରିବାର କୋଳରେ ଧରି ହୋଇଛି ଜନବହୁଳ । କେତେ ବିଦେଶୀ—କେତେ ଗାଁ ବାଲା—ସବୁ ମିଶାମିଶିରେ ନଗରୀ ହୋଇଛି । ଟାଉନର ଚଳଣୀ—ଫ୍ୟାକ୍ଟ୍ରୀର ଭୁଙ୍କା ବାଜେ—ଚେମିନି ଧୂଆଁ ଛାଡ଼େ— ଶ୍ରମିକ ଆସନ୍ତି, ଯାଆନ୍ତି । କିଛିକ୍ଷଣ ପାଇଁ ରାସ୍ତା ଜନଗହଳି ହୋଇ ଉଠେ—ଆସିବା ଯିବା, ପୁଁ-ପାଁ-ମଟର୍-ସାଇକଲ-ରିକ୍ସା-ବସ ଇତ୍ୟାଦିରେ । ଟିଫିନ କ୍ୟାରିଅର କାହା ହାତରେ ତ କାହା ହାତରେ ଗାମୁଛା । ଶ୍ରମକ୍ଳାନ୍ତ ମୁଖମଣ୍ଡଳ ଝଡ଼ିଉଠେ । ଅପୂର୍ବମାନ ତା'ର ଗତି—କିଏ ଆସୁଛି—କିଏ ଯାଉଛି । ଚାକିରୀ କରି କିଏ ଆସୁଛି । ଆଉ କିଏ ଚାକିରୀ ପାଇଁ ଯାଉଛି । ଯାଉଛନ୍ତି ଆବାଳ ବୃଦ୍ଧବନିତା କୋଳରେ ଧରି ଶାବଲିଳା ଗତିରେ ଚାଲିଛି ଦୁର୍ଗାପୁର । ଛନ୍ଦ ତାର ଗତି—ତାର ଆପଣାର —ତାର ନିଜର ।

ବସନ୍ତର କ୍ୱାଟର—ବଡ଼ ଇଞ୍ଜିନିୟରଙ୍କର ଘର--ମାଲି, ଚାକରବାକର, କେଉଁଥିରେ ଯେପରି କିଛି କମ ନାହିଁ । ସାଥିରେ ଶୋଭା ପ୍ରକାଶି, ବିକଶି ଉଠୁଛି ବସନ୍ତଙ୍କର ନବ ବିବାହିତା ପତ୍ନୀ 'ଋତୁ'—ଚାଲିରେ ତାଙ୍କର ଛନ୍ଦ, ହୃଦରେ ସ୍ୱପ୍ନ ଭରି ଘରଟିକୁ

ଆନ୍ତର ଦ୍ୱିଗୁଣିତ ସୁନ୍ଦର କରି ତୋଳୁଛି । ଆଶା ତାଙ୍କର ଉଚ୍ଚ...ଇଚ୍ଛା ତାଙ୍କର କାମ୍ୟ । ପକ୍ଷୀ ହୋଇ ଆକାଶରେ ଉଡ଼ିବାକୁ ଚାହାନ୍ତି । ଉଡ଼ି ଉଡ଼ି ବହୁତ ଦୂର ସ୍ୱପ୍ନ ରାଇଜରେ ବସନ୍ତ ଆଉ ଋତୁଙ୍କ ମନ ବିଚରଣ କରିବାକୁ ଚାହେଁ । ସୃଷ୍ଟି ଆଉ ସୃଜନାର ଗୋଟିଏ ଅନ୍ତହୀନ ଜଳ ସମୁଦ୍ର ଆଉ ତାରି ଉପରେ ଉଡ଼ି ଚାଲିଥିବେ ଦମ୍ପତିର ଯୁଗଳ ମୂରତି । ଶେଷ ନ ହେଉଥିବା ଦିନ···ଶେଷ ନ ହେଉଥିବା ରାତି । ଇବ୍ ନସୀର କାହାଣୀ ପରି ଅନ୍ଧରଞ୍ଜିତ କରି । ତାର ଆଦ୍ୟ କେଉଁଠି, ଅନ୍ତ କେଉଁଠି ସେ ନିଜେ ହୁଏତ ଜାଣେନା । କେବଳ ଗୁଡ଼ାଏ ଆନନ୍ଦ, ଗୁଡ଼ାଏ ଉନ୍ମାଦ ଜନ୍ମାଇ ଆନନ୍ଦର ସାଗର ପାରିକୁ ଚାଲିଯାଏ ସ୍ୱର୍ଗର ନନ୍ଦନକାନନରେ ବିଚରିବାକୁ—ଆକାଶର ପାରିଜାତ ତୋଳିବାକୁ । କିନ୍ତୁ ଆକାଶର ପାରିଜାତ ତୋଳିବାରେ କେତେ ଯେ ଯାତନା ସେ କଥା ସେ ଜାଣେନା । ସେ କଥା ଥିଲା ଚେତନା ବାହାରେ । କେବଳ ଫୂର୍ତ୍ତି—କେବଳ ଫୂର୍ତ୍ତି—ହସ୍‌ଖେଳ ଜୀବନର ବନ୍ଧୁ ଆଉ ଗୋଟିଏ ବାନ୍ଧବୀର ।

ଗୁଡ଼ାଏ ଗପିବା, ଗୁଡ଼ାଏ ବୁଲିବା, ଗପି ଗପି ସାରା ଦିନ ବିତାଇ ଦେବାରେ ଆନନ୍ଦ, ସତେ ଯେପରି ଦୁଇଟି ସୃଷ୍ଟିର ଶିବ ଚାଲିଛନ୍ତି···ଚାଲିଛନ୍ତି । ଚିନ୍ତା ନାହିଁ, ଶୋଚନା ନାହିଁ । ଶୋଚନା ନଥିଲା ଋତୁର ଆଉ ବସନ୍ତର । ଗୋଟିଏ କିଶୋରୀ ଆଉ ଗୋଟିଏ କିଶୋରର ସ୍ୱପ୍ନ ଭରା କାହାଣୀରେ ଭାସି ଯାଉଥିଲେ ଦୂରକୁ—ମା'ର କୋଳରୁ ବହୁତ ଦୂରକୁ ନୀଡ଼ ରଚିବାକୁ । ନୂତନ ଦିନର ନୂତନ ବେଳା, ନୂତନ ଆଦର ଭିତରେ ନୂଆ ପକ୍ଷୀ ଡେଣା ମେଲୁଛି, ଖଣ୍ଡି ଉଡ଼ା ଦେଉଛି, ଉଠୁଛି, ପଡ଼ୁଛି । ଗୋଟିଏ ଅବୁଝା ପଣ, ଗୋଟିଏ ଅବାଧ ପଣ । ସେଇ ଅବାଧ ମନ ତଳେ ଖେଳୁଛି କେତେ ସ୍ୱପ୍ନ—ଗୋଟିଏ ହସିଲା ଦିନ ଫୁଟିଲା ଗୋଲାପର କଥା । ସେ ଗୋଲାପ ଆଉ କେହି ନୁହେଁ, ସେ ହେଉଛନ୍ତି ଋତୁ ପାଟଣୀ । ଦ୍ୱିତୀୟ ବର୍ଷ କଳାର ଛାତ୍ରୀ—ବସନ୍ତ ପଟ୍ଟନାୟକଙ୍କ ପ୍ରେମର ବାନ୍ଧବୀ ।

ଯୁବକ ବସନ୍ତଙ୍କର ମନ କେଉଁ ଅଜଣା ରାଇଜରେ ବୁଲୁଛି । ଦିନେ ନ ଦେଖିଲେ ଋତୁକୁ ସତେ ଯେପରି ପାଗଳ ହୋଇଯିବ । ଖାଇବାକୁ ରୁଚିବ ନାହିଁ କି ଆଖିରେ ପଲକ ପଡ଼ିବ ନାହିଁ ରାତିରେ । ସେଇପରି ବ୍ୟଗ୍ରତା, ଚଞ୍ଚଳ ମନରେ ଖୋଜିପକାଇଲା । ଟପଲଟା ଟିକିଏ ଫାଟି ଯାଇଛି, ଚଳିବ । କାମିଜଟା ସଫା ଅଛି ତ ? ଆଖି ବୁଲାଇ ଦେଲା—ଆରେ ଭଲ ସାର୍ଟଗୁଡ଼ିକ ତ ଲଣ୍ଡ୍ରୀରୁ ଆସିନି । ଗୋଟାଏ

ବୋତାମ ଫ୍ଲପଡ଼ିଲା ପରି ମନେହେଉଛି । କେତେବେଳେ ଛିଣ୍ଡି ଯାଇ ପାରେ । ତା ଛଡ଼ା ଏଇ ହଷ୍ଟେଲ ଟୋକାଏ ଟେରେଇ ଟେରେଇ ଚାହୁଁଥିବେ, କିଏ ଗୋଟାଏ କୁଆଡ଼େ ଗଲାବେଳେ । ବଡ଼ ଖରାପ ଲାଗେ ବାସ୍ତବିକ୍ । କିଛି କହି ହୁଏନି, କି ସହି ହୁଏନି । ମନେ ମନେ ବଡ଼ ଅଶାନ୍ତ ଲାଗେ ।

ବସନ୍ତ ଯେଉଁ ସିମେଣ୍ଟ ବେଞ୍ଚରେ ବସେ ଋତୁ ପାଟ୍ଟଶାଣୀର ମଧ୍ୟ ସେଇ ଯାଗା ଥିଲା ଆଦରେ । ବସନ୍ତର ନୂଆ ମନରେ କିପରି କୁହୁକର କାଉଁରୀ କାଠି ବୋଲି ଥିଲା ଋତୁ ପାଟ୍ଟଶାଣୀ । ସୁନ୍ଦର ତା'ର ସେ ଗୋଲାପି ରଙ୍ଗର ରୂପରେ ଗୋଲାପି ସାଢ଼ି ଆଉ ବ୍ଲାଉଜ ଠିକ୍ ଗୋଟିଏ ସଦ୍ୟ ଗୋଲାପର ରୂପ ନିଏ । ଆଉ ମହାନଦୀ କୂଳର ଆସର ସନ୍ଧ୍ୟାକୁ ଆହୁରି ସୁବାସିତ କରେ ଋତୁ ଲଗାଇଥିବା ବିଦେଶୀ ଅତରର ଭୁର ଭୁର ଗନ୍ଧ । ମନରେ ଜଗାଏ ଉଲଗ୍ନ ବାସନା—ହଜି ହଜାଇ ଦେବାର ସ୍ୱପ୍ନ । ତା'ର ରୂପ ସୁଷମାରେ ଆହୁରି ଦ୍ୱିଗୁଣ ସୌନ୍ଦର୍ଯ୍ୟ ବର୍ଦ୍ଧନ କରି ଦେଲେ ତା'ର ନିତମ୍ବ ଚୁମ୍ବିତ ଲମ୍ବା ବେଣୀ ଦୁଇଟି—ଅବିଶ୍ରାନ୍ତ ଗତିରେ ଦୋହଲୁଥାଏ । ତା'ର କୁଞ୍ଚ କୁଞ୍ଚ ଚୂର୍ଣ୍ଣ କୁନ୍ତଳର ବାଳ ଦୁଇ ଓଟନୋଟି ତା'ର ଗୋଲାପି ପାଟଳ ଗାଲରେ ଲହରି ଖେଳୁଥାଏ । ଆଉ ଚଞ୍ଚଳ ହରିଣୀର ନେତ୍ର ପରି ତାର ଲମ୍ବା ଲମ୍ବା ଭ୍ରୂରୁ ତଳେ ଢଳ ଢଳ ଆଖି ଦୁଇଟି ତେରେଇ ତେରେଇ ଚାହୁଁଥାଏ । ତା'ର ସେ ଟଣା ଟଣା ଅଞ୍ଜନ ବୋଳା ଆଖିରେ କି ଯେ ଗୁରୁ କଥା ଲେଖା ଥିଲା ନ ଦେଖିଲେ ବିଶ୍ୱାସ କରି ହୁଏ ନାହିଁ । ଲିପଷ୍ଟିକ୍ ବୋଳା ନାଲି ଅଧର ଭିତରୁ ଡାଳିମ୍ବ ମଞ୍ଜି ପରି ଝଞ୍ଜା ଝଞ୍ଜା ଦନ୍ତ ପଂକ୍ତିର ହସରେ ଯେତେ କି ମୁକ୍ତା ଝରେ । ଯେତେ ଯେପରି ଏଇ ଋତୁର ରୂପ ସାଥିରେ ସାଥି କଲେ ଆକାଶର ଚନ୍ଦ୍ର ତାରା ବି ହାର ମାନେ ।

ଆଉ ବସନ୍ତ ଦେଖେ ଋତୁକୁ ରାସ୍ତାରେ ଗଲାବେଳେ । କିଏ ଯେପରି ଜିଜ୍ଞାସା ଚକ୍ଷୁରେ କୁହେ—ଝିଅ ଫେର୍ ଏତେ ସୁନ୍ଦର ହୋଇ ପାରେ ! କବିତାର ମାନସୀ କବିର କଳ୍ପନା ନା ଆଉ ଏ କ'ଣ ସତେ ?!

ଆଉ ସେଇ ସୌନ୍ଦର୍ଯ୍ୟରେ ମୋହିତ ହୋଇ ସେଇ ସୁନ୍ଦର କାନନ ତଳେ ଲୁଚିଯିବାକୁ ଚାହେଁ ବସନ୍ତ ପଟ୍ଟନାୟକ । ଦ୍ୱିତୀୟ ବର୍ଷ ଗଣିତ ଛାତ୍ର ଋତୁର ରୂପ ମନ୍ଦିରରେ ବନ୍ଦୀ ରହିବାକୁ ଚାହେଁ— ।

ସେଇ ସ୍ୱପ୍ନରେ ଆହ୍ୱତ ହେବାକୁ ସେ ଖୋଜନ୍ତି ଏକାନ୍ତ । ରାତି ଦିନ ଫଟୋ ଦେଖନ୍ତି, ଚିଠି ଲେଖନ୍ତି । ପ୍ରଥମ ପ୍ରେମର ସୂଚନା ଦେଇ ମଳୟ ବି ବୋହି ଯାଉଛି । ଦୁଇଟି ପ୍ରାଣରେ ପ୍ରେମର ପକ୍ଷୀ ଉଡ଼ି ଉଡ଼ି ବୁଲୁଛନ୍ତି । ଜଣେ ଜଣକୁ ଦେଖିବାକୁ ବ୍ୟାକୁଳ । ଜଣେ ଜଣକୁ ପାଖରେ ପାଇବାକୁ ଯେଉଁ ଆନନ୍ଦ ସେଇ ଆନନ୍ଦର ପାରାବାରରେ ଉବେଇ ଟୁବେଇ ହୋଇ କୂଳକୁ ଲାଗିବାକୁ ଚାହେଁ । ବସନ୍ତ ଆଖିରେ ଋତୁର ଛବି ସୁନ୍ଦର ହେଲେ ମଧ୍ୟ ସେଇପରି ଋତୁ ଆଖିରେ ବସନ୍ତର ସୌମ୍ୟ ସୁନ୍ଦର ରୂପ ନାଚେ ।

ତା'ର ମୋଟା ମୋଟା ଭ୍ରୂ ତଳେ ପୁରୁଷ ପଣର ଗମ୍ଭୀର ଚାହାଣି, ତା'ର କୁଞ୍ଚି କୁଞ୍ଚି କେଶରାଶି, ବଳିଷ୍ଠ ଚେହେରା ପୁରୁଷର ବ୍ୟକ୍ତିତ୍ୱ ଜଣାଏ—ସ୍ୱାଗତ କରେ ଋତୁକୁ । ସତେ ଯେପରି ବାରମ୍ବାର ମିଳିତ ହୋଇ ମନର ଆନନ୍ଦ ଲହରୀରେ ନାଚ କୁଦ ତା'ର ସ୍ୱର ସମ୍ମିଳିତ ତୋଳି ସମସ୍ତ ଅଭିବାଦିତ କରେ । ବ୍ଲାକ ଗାବାର୍ଡିନ୍ କନାର ପ୍ୟାଣ୍ଟ, ଆଉ କ୍ରିମ ଆକାଶି ରଙ୍ଗର ସାର୍ଟ ଖୁବ୍ ସୁନ୍ଦର ମାନେ ବସନ୍ତକୁ । ତା'ର ରୂପ, ଗୁଣ ସବୁକୁ ଆହୁରି ସୁନ୍ଦର କରି ତୋଳେ ତା'ର ମୁଖର 'ଗୋଲ୍ଡ ଫ୍ଲେକ୍' ସିଗାରେଟର ଗନ୍ଧ । ଭୁରୁ ଭୁରୁ ଗନ୍ଧରେ କପରି ଗୋଟାଏ ମନ ମହକା ଉଚ୍ଛଳ ତୋଳେ । ଋତୁ କ୍ଷଣକ ଲାଗି ଭୁଲିଯାଏ—ସେ କିଏ, ବସନ୍ତ କିଏ, ବା ମିଳିଲେ କଣ ହେବ ଇତ୍ୟାଦି । ନିଜର ଚିନ୍ତା, ଘରର ଚିନ୍ତା ସବୁ ଭୁଲିଯାଏ । ଆଉ ଉତ୍କଣ୍ଠା ଚିତ୍ତରେ ଅନାଇଥାଏ ବସନ୍ତର ପ୍ରତୀକ୍ଷାରେ ।

କାଠଯୋଡ଼ି ନଦୀର ବିରାଟ ପଥର ବନ୍ଧ । ତଳକୁ ସିମେଣ୍ଟ ବେଞ୍ଚ, ହନୁମାନ ମନ୍ଦିର । ଏହିପରି ଯୋଡ଼ିଏ ଯୁଗଳ ମୂରତି ବସନ୍ତ—କେତେ ଗପସପ ହୁଏ । ଗୋଟିଏ ଛୁଞ୍ଚି ମୁନରେ ମୁନେ କଥା ସତେ ଯେପରି କାହା ପେଟରେ ରହେ ନାହିଁ । ଜଣେ ଜଣଙ୍କ ଅନ୍ତରର ସବୁ କଥା କହି ପରିଷ୍କାର ହୋଇଯିବାକୁ ଚାହାନ୍ତି । କାଠଯୋଡ଼ି ନଦୀ ବନ୍ଧରେ ବସି ବସି ଗପ କରିବା, ସିନେମା ଯିବା, ଚିଠି ଘଣ୍ଟା ଘଣ୍ଟା ବସି ଲେଖିବା ଓ ପଢ଼ିବା, ଏହି ଥାଏ ନିତିଦିନିଆ କାମ । ଜଣଙ୍କର ଟିକେ ଡେରି ହେଲେ ଅନ୍ୟ ଜଣେ କାତର ହୋଇପଡ଼େ ।

ଦୁଇଟିଙ୍କର କାର୍ଯ୍ୟକଳାପ ଦେଖେ ସେହି ସିମେଣ୍ଟ ବେଞ୍ଚ ପାଖରେ ଥିବା ବରଗଛଟି-- ମୂକ ସାକ୍ଷୀରୂପେ ଠିଆହୋଇ ପହରା ଦେଇଥାଏ ।

ନଈର ଷୀଣ ଧାରାଟି ବହି ଚାଲିଛି ତା'ର ନିଜସ୍ୱ ଗତିରେ । ତାକୁ ବଦଳାଇବାକୁ ଯେପରି ଆକାଶର ଦେବତାଙ୍କର ହୁଏତ ଇଚ୍ଛା ନାହିଁ—ସେ ତା'ର ସାବଲୀଳ ଗତିରେ ଗଡ଼ି ଚାଲିଛି, ଚାଲିବ । ନଦୀ ବାଲି ଆଉ ପାଣିର ଧାର ଆରପଟେ ପଠା—ନଈପଠା ଉପରେ ପଲ୍ଲୀ ଗାଁଟି । ଅସ୍ପଷ୍ଟ ତା'ର ଦୃଶ୍ୟ ଆଖିକୁ ମନେ ହୁଏ । ଷ୍ୱବନାର ଅନ୍ତରାଳରେ ଛପିଯାଏ ତା'ର ଚହଟ । ଗାଁ ଝିଅମାନେ କାଖରେ କଳସୀ ଧରି ଯିବାବେଳେ ଅସ୍ତସୂର୍ଯ୍ୟ ରଶ୍ମି ତା'ର ରୂପ ତନୁ ମୋହିତ କରେ । କେତେ କବି, କେତେ ଜ୍ଞାନ, କେତେ ମୁନି କବିତା ଲେଖିଛନ୍ତି । ପ୍ରକୃତି ରାଣୀର ଠାଣି ଧରି ସତେ ଯେପରି ପଲ୍ଲୀ ଲଳନା ମନରେ ଶତ ସ୍ୱପ୍ନର ଝଙ୍କାର ଝରାଏ ।

ଫେରି କେତେବେଳେ ନିରୋଳା ସନ୍ଧ୍ୟାକୁ ମନ ଖୋଜେ—ଏହି କାଠଯୋଡ଼ିର ବାଲୁକା ରାଶିର ଶଯ୍ୟାରେ ।

ଆହୁରି ଏହିପରି ଗୋଟିଏ ଗୋଟିଏ ଜନମୁଖରିତ ସନ୍ଧ୍ୟାକୁ ମନ ନିକଟରେ ତା'ର ମନ ଚାଲିଯାଏ । ଏହି ଅତୀତ ଇତିହାସ-ଭରା କାଠଯୋଡ଼ି ପଥର ବନ୍ଧ । ଆଉ ତା'ର ଜନ ଗହଳି—ମାପିଯାଏ କଟକ ଟାଉନର ଉନ୍ନତି ।

ଏହି ହସଖେଳର ପରିବେଶ କୁମାରୀ ଚିତ୍ରୁ ପାଟଶାଣୀକୁ ସ୍ୱପ୍ନର ଅଞ୍ଜନ ଲଗାଇ ଦେଇଛି । ବନ୍ଧୁ ଆଉ ପାଠ ଏ ଦୁଇଟା ପୁରୁମନରୁ ଅଲଗା ହୋଇ ଯାଉଛନ୍ତି । ଆଉ ବାପାଙ୍କ ପାଖରୁ ଗାଁରୁ ଚିଠି ଆସିଛି । "ତୁ ଲେଖିଥିଲୁ ଛୁଟିରେ ଆସିବା ପାଇଁ ଘରକୁ, କାହିଁକି ଆସିଲୁ ନାହିଁ ? ଟଙ୍କା ପଇସା ତୋ ହାତରେ ଅଛି କି ନାହିଁ ? ତୋ ବୋଉ ଖୁବ ବ୍ୟସ୍ତ ହେଉଥିଲେ ତୋ ପାଇଁ—ତୁ ନଆସିଲେ ପଛେ ନାହିଁ—ଚିଠି ଖଣ୍ଡେ ଲେଖି ତୋ ଖବର ଜଣା । ତୋର ପରୀକ୍ଷା ଫଳ କେବେ ବାହାରିବ ଲେଖିବୁ । ହଷ୍ଟେଲ ତ ବନ୍ଦ ତୁ ରହିଲୁ କେଉଁଠି" ? ବସନ୍ତପରୁ ବାପା ଦେଇଛନ୍ତି ଚିଠି "ସ୍ନେହର ବସନ୍ତ । ତୁ କିପରି ଅଛୁ । ମୋତେ ସମୟ ନ ଥିବାରୁ ମୁଁ ଯାଇ ପାରୁନି । ଅନେକ ଦିନହେଲା ଘରକୁ ଚିଠି ଦେଇନୁ ବୋଲି ତୋ ବୋଉ ଖୁବ ଚିନ୍ତିତ । ତୋ ଦେହ ଭଲ ଅଛି ତ ? ପରୀକ୍ଷାରେ କିପରି କଲୁ ଜଣାଇବୁ । ଚିଠି ପାଇ ଚିଠି ଦେବୁ ।" ଇତି ।

ପିଲାଙ୍କର ଘର ପ୍ରତି ଆଗ୍ରହହୀନ କାରଣ ସେ ସମୟର ଅଭାବ ସେ କଥା ବସନ୍ତଘର ଲୋକେ ବା ଶତ୍ରୁଘର ଲୋକେ କେହି ସେତେବେଳେ ବୁଝି ନଥିଲେ । କହୁଥିଲେ

ବିଚାର ପିଲାଟାକୁ ପାଠ ପଢ଼ାରେ ଫୁରସତ୍ ମିଳୁନାହିଁ । ହଷ୍ଟେଲ ତ ଛୁଟି ହେବଣି, ସେ ରହୁଛି କେଉଁଠି ? କେଉଁ ସାଙ୍ଗ ସାଙ୍ଗ ପାଖରେ ଥିବ ବୋଧହୁଏ । ପିତାର ପୁତ୍ରଠାରେ ଆତ୍ମବିଶ୍ୱାସ—ଆଉ ପୁତ୍ରର ଅବୁଝା ପଣ ବଢ଼ିଉଠେ ।

ବସନ୍ତଠୁ ଏଥର ଚିଠି ଆସେ ଟଙ୍କା ପାଇଁ । ବହୁତ ଖର୍ଚ୍ଚ ହେଉଛି । ଟାଇ କିଣିବ, ସିନେମା ଯିବ, ଯୋତା ଫାଟି ଗଲାଣି, ଏ ମାସରେ ନ କଲେ ହେବନି । ଦୁଇଟିଯାକ ସାର୍ଟ ଫାଟିଗଲାଣି ଇତ୍ୟାଦି··· ମିଛର ଆଶ୍ରୟ··· ଠକିବାର ଅଭିପ୍ରାୟ ଯେ କାହିଁକି ?

ସେ କଥା ନକହିଲେ ମଧ୍ୟ ବୁଝିହୁଏ । ଋତୁର ଫରମାସୀ, ଆଉ ଋତୁକୁ ଖୁସି କରିବାକୁ ମନର ଚରିତାର୍ଥ ଅଭିଳାଷର ପରିପୂର୍ଣ୍ଣ ଇଛାରେ ଟଙ୍କା ଦରକାର ।

ଲୁଚା ଛପା ଦେଖା ଚାହାଁ ଆଉ ନାହିଁ । ସାଙ୍ଗମାନେ କିଛି ନ ପଚାରିଲେ ମଧ୍ୟ ସେମାନେ ଜାଣନ୍ତି ବସନ୍ତ ଭଲପାଏ ଋତୁକୁ । ଆଉ ଋତୁ ଭଲପାଏ ବସନ୍ତକୁ । କଲେଜରେ ଡ୍ରାମା ହୁଏ । ଆଉ କିଛି ଫଙ୍କସନ ବି ହୁଏ । ସାଙ୍ଗମାନଙ୍କ ଆଗରେ ଋତୁ ଅଭିନୟ କରେ ଯେପରି ବସନ୍ତ ସାଥିରେ ତା'ର କିଛି ସମ୍ପର୍କ ନାହିଁ । ଆଉ ବସନ୍ତ ମଧ୍ୟ ଠିକ୍ ସେଇ ସୁନ୍ଦର ପନ୍ଥା ଧରେ—ସାଙ୍ଗମାନଙ୍କ ମୁହଁରେ ଋତୁ ଯେତେବେଳେ ବସନ୍ତର ପ୍ରଂଶସା ଶୁଣେ ଆନନ୍ଦରେ ତା ମନ କୁଟଂମୋଠ ହୋଇଯାଏ । ଆଉ ବସନ୍ତ ଯଦି ଋତୁର ପ୍ରଂଶସା ଶୁଣେ ସେ ବି କିଛି କମ୍ ଖୁସି ହୁଏନାହିଁ । ସତେ ଯେପରି ସଦ୍ୟ ପ୍ରସ୍ଫୁଟିତ ଗୋଟିଏ ବୃନ୍ତରେ ଦୁଇଟି ଫୁଲ । ହସି ଖେଳି ଲେହିଁ ଯାଉଛନ୍ତି । ସୁରଭି ବିକାଶ ଚୋଳି ଛନ୍ଦଭରା ଗୀତରେ ନାଚି କୁଦି ହସି ହସାଇବାକୁ ଚାହାନ୍ତି ।

ଦିନ ଗଡ଼ିଚାଲିଛି—ପ୍ରକୃତିର କୋଳରେ ଦିନର ସାଥି ପାଲଟେଇ ପାଲଟେଇ । ନଦୀ ଚାହୁଁଛି ସାଗର ସହିତ ସଙ୍ଗମ । ତା'ର ଜୀବନର ଆଶା ମୂର୍ତ୍ତି ପ୍ରକାଶ ହେବାକୁ ଚାହେଁ । କୌଣସି ବାଧା ବନ୍ଧନ ଯେପରି ମାନେନାହିଁ, ଯେତେ ନଦୀର କୂଳ କିନାରା ଅଗଇ ସେ ବହି ଯିବାକୁ ଚାହେଁ ।

ଠିକ୍ ଋତୁ ଆଉ ବସନ୍ତଙ୍କ ଜୀବନ ନଦୀଟି ପରି ନିର୍ମଳ, ଆଉ କଳକଳ ଛଳଛଳ ଶବ୍ଦରେ ବହି ଯାଉଛି । ଗୋଟିଏ 'ଅଙ୍କ' ପରେ ଟଣା ହୁଏ ଯବନିକା—ପୁଣି ଆଉ

ଗୋଟିଏ ଅଙ୍କରେ ହୁଏ ଆରମ୍ଭ । ଏ ଜୀବନ ବାସ୍ତବର ଘଟଣାକୁ ବହୁଳ ଏକାଠି ଭିଡ଼ କରି ଆଗେଇ ଚାଲେ ।

ପିଲା ଖେଳ ସତରେ ପରିଣତ ହେବାକୁ ଗଲାବେଳେ ବାଧାଦିଏ ଗୋଟିଏ ବିରାଟ ପ୍ରଶ୍ନବାଚକ ଚିହ୍ନ ? ଏହି ପ୍ରଶ୍ନ ନିଜ ଭିତରେ ନିଜେ ପର୍ବତ ଉଠେ । ଆଶଙ୍କାର ଅସ୍ପଷ୍ଟ ରେଖା ମୁଖ ମଣ୍ଡଳରେ ଆଙ୍କି ହୋଇଯାଏ ।

ଋତୁ ପରୀକ୍ଷାରେ ସେତେ ଭଲ କରିନି । ଏ କଲେଜରୁ ଋତୁ ବିଦାୟ ନେବା ଆଗରୁ ବସନ୍ତ ପାଖରେ ତା'ର ଜୀବନର ଗତର ପୃଷ୍ଠା ଓଲଟାଇ ଚାଲିଛି । କିପରି କ'ଣ କରିବାକୁ ହେବ... ।

ବର୍ତ୍ତମାନ ବିଚ୍ଛେଦର ଯନ୍ତ୍ରଣାରେ ମନକୁ ଭାରାକ୍ରାନ୍ତ କରେ । ମିଳନର ସମ୍ଭବ ଆଶାରେ ବଞ୍ଚି ରହିବାକୁ ହେବ—ଦୀର୍ଘ ଦୁଇ ବର୍ଷ । ବସନ୍ତ ଟ୍ରେନିଂରୁ ଫେରିଲେ ଚାକିରି ପାଇବେ, ଆଉ ଋତୁ ତା'ର ବି. ଇଡ୍. ଟ୍ରେନିଂ ସାରି ଚାକିରି ପାଇବ । ଦୁଇଟି ଆକାଂକ୍ଷିତ ଆତ୍ମାର ମିଳନ । ଦୁଇଟି ଜୀବନର ଛନ୍ଦ ଯେପରି ଆକାଶ ଆଉ ଅବନୀର ମିଳନ । ସତେ ଯେପରି ପ୍ରକୃତିର ସ୍ୱୀକୃତି ମିଳନ ଚାହିଁ ରହିବାକୁ କହୁଛି । ଏଇ ଯନ୍ତ୍ରଣାର କେତେ ଅଶ୍ରୁର ଆର୍ଦ୍ରତା, କେତେ ଯେ ମନର ଜ୍ୱାଳା ତାହା କଳି ହୁଏ ନାହିଁ । ସେ ବିସ୍ଫାରିତ ଚକ୍ଷୁରେ ଚାହିଁ କଳନା କରିବାକୁ ଚାହେଁ । ତା'ର ମୁହଁର ଆଭା ମଉଳି ଆସେ । ତା'ର କଳା ଯନ୍ତ୍ରଣାର ଛବି ଯେପରି ବସନ୍ତ ଆଉ ଋତୁର ମୁଖ ମଣ୍ଡଳରେ ଆଙ୍କି ଦିଏ ।

ଝାଲି ମୁଖମଣ୍ଡଳ କାହିଁକି, ଦେହ ପ୍ରାଣ ମନ ବି ଯେପରି ବିରହ ଅଗ୍ନିର ଦାବାନଳରେ ଜଳିଯାଏ । ଆଖିର ଲୁହ ବାଧା ମାନେନି । ହୃଦୟର ଆବେଗ ଆଖି କୋଣରେ ଲୁହ ହୋଇ ଜମି ଆସେ । ବହିଯାଉ, ମନର ଦୁଃଖ ଉପଶମ ହେଉ, କିନ୍ତୁ ଥରେ କି ଆଖିରୁ ଲୁହ ଗଡ଼ିଲେ ହୁଏ । ସେ ତା'ର ଅତୀତର ଧୂମଳକୃତ ଗୋଟିଏ ଗୋଟିଏ ଅଙ୍କକୁ ମନେପକାଇବାକୁ ଚାହେଁ । ସେ ତାର ଅନାଗତ ଭବିଷ୍ୟତ ଚିନ୍ତାର ଚିତ୍ର ଭୂମିକାର ସନ୍ଧାନ ଖୋଜି ଖୋଜି ଅଣନିଶ୍ୱାସୀ ହୋଇଯିବାକୁ ଚାହେଁ । ଦୁଃଶ୍ଚିନ୍ତା ମନ ତଳେ ତା'ର ରୂପର ଜବନିକା ସହଜେ ଧରି ହୁଏ ନାହିଁ । ଉଦ୍‌ଭ୍ରାନ୍ତ ମନ ତଳେ ଚିନ୍ତାର ଲହରୀ ଖେଳେ କେତେ ତା'ର ରୂପ ନେଇ ।

ଯା ସ୍ୱଚ୍ଛାସମସ୍ତ ଜୀବନର ଛନ୍ଦ ଗତି ବାଧା ମାନେନା । ସେ ଧାଇଁ ପ୍ରାନ୍ତରେ ବାଘ ଧାଇଁ ପରି ଗଡ଼ି ଚାଲେ । ଚନ୍ତ୍ରାର ମରୁଭୂମି ଭିତରେ ଦୁଇଟି ଅଦ୍ଭୁତ ମନର ପକ୍ଷୀ—ଯେପରି ଗୋଟିଏ ନାବର ଯାତ୍ରୀ ଏମାନେ । କେତେ ବା ଝାଣ ନିଜ ପାଖରେ ନିଜେ କରିପାରେ ? ସେ ନଗ୍ରଶାର ବନ୍ଦୀ ହେଲେ ଯେପରି ଜଳଧର ସୀମା ଲଙ୍ଘନ କରେ । ଯା ଯୋଗାଣ—ଗୁଡ଼ାଏ ଯନ୍ତ୍ରଣା ଆଉ ଗୁଡ଼ାଏ କ୍ଷୋଭ, କାହା ଉପରେ ନୁହେଁ—ନିଜ ଉପରେ ନିଜେ ବସନ୍ତ ଦିନ ଦଣ୍ଡ ଗଣୁଛି ଆଉ ରିତୁ ମଧ୍ୟ ଗଣୁଛି ।

ନିଜର ପଛ ବୁଦ୍ଧି ପାଇଁ ନିଜର ପ୍ରାୟଶ୍ଚିତ୍ତ ପାଇଁ ଯେତେ ଆଖିରୁ ଲୁହ ଗଡ଼ାଇଲେ ବି ଯେପରି ସରେ ନାହିଁ, ଦେହ କ୍ଷୀଣ କଲେ ବି ସେପରି କିଛି ହୁଏନା । ଫେର୍ ସେ ଅତୀତକୁ ମନ ଫେରି ଯିବାକୁ ଚାହେଁ—ସେହି ଉନ୍ମାଦ, ସେହି ଉଲ୍ଲାସ, ସେହି ଉତ୍ସାହ ମଧ୍ୟକୁ । ଅତୀତର ମଧୁର ସ୍ମୃତିକୁ ମନରେ ଜଗାଇ ମନକୁ ଅସ୍ଥିର ଦୋହଲା କରେ, କ୍ଷତବିକ୍ଷତ କରେ । ପ୍ରତୀକ୍ଷାର ଲମ୍ବା ଦ୍ୱାହିରେ ବାଧା ଦିଏ ।

ଏହିପରି ଚାରିବର୍ଷ ବସନ୍ତର ଅତୀତ ହୋଇଯାଇଛି । ଆଉ ପ୍ରତ୍ୟାବର୍ତ୍ତନର ସମ୍ବେଦନଶୀଳ ଦୁନିଆର ଗତି ତା'ର ଘୂର୍ଣ୍ଣନମୟ ପଥରେ ଘୂରୁଛି । ଆଉ ତା'ର ଘୂର୍ଣ୍ଣନମୟ ବାତାବରଣର ଆହ୍ୱାନରେ ମଣିଷ ବି ଘୂରୁଛି ତାର ଗତି ଅନୁସରଣ କରି କରି ।

ରିତୁ ବସନ୍ତଙ୍କ ଶୁଭପରିଣୟ ଯେପରି ଗୋଟିଏ ସ୍ୱର୍ଗପୁରର ଅପ୍ସରା ଗନ୍ଧର୍ବଙ୍କର ପରି ମନେହୁଏ । ପର୍ଦ୍ଦାର ନୁହେଁ—ସେ ଯାଦୁକର, ନିହାତି ଯାଦୁକର । ସତେ ଯେପରି ଯୋଡ଼ିଏ ଆକାଂକ୍ଷାର ମିଳନ, ଦୁଇଟି ମନର ମିଳନ, ତୃପ୍ତିର ମିଳନ, ଶାନ୍ତିର ମିଳନ, ଦୁଇଟି ପୁଷ୍ପର ମିଳନ । ସତେ ଯେପରି କେତେ ଯୁଗର ଅତୃପ୍ତି କାମନା ଆଉ ବାସନାର ଆକାଂକ୍ଷିତର ସେ ଶୁଭ ମିଳନ । ଯେପରି ଆଗ୍ରହୀ ହୋଇ ଛୁଟିଥାଏ ଉଲ୍ଲାସର ଛନ୍ଦ ରଚି, ନଦୀ ତା'ର ପ୍ରାଣପ୍ରିୟ ସାଗର ସଙ୍ଗମରେ । ଅବନୀର ବ୍ୟାକୁଳ ପ୍ରତୀକ୍ଷା କରି କରି ଧାଇଁଥାଏ ଆକାଶରେ ମିଳିବାକୁ—ଠିକ୍ ଗୋଟିଏ ପ୍ରକୃତି ଆଉ ପୁରୁଷର ସେ ଆଦିମ ଯୁଗର ମିଳନ । ମିଳନ କରିଏ ତା'ର ବ୍ରହ୍ମାଙ୍କର ଇଙ୍ଗିତରେ—ବସନ୍ତ ଆଉ ରିତୁ ବା ବାଦ୍ ଯାଆନ୍ତେ କିପରି ?

ଯେଉଁଦିନ ବସନ୍ତ ତା'ର ପସନ୍ଦ ଜଣାଇଥିଲେ ବାପାଙ୍କ ପାଖରେ ସେ ଦିନ ବାପା ସନ୍ତୁଷ୍ଟ ଚିତ୍ତରେ କହିଥିଲେ, "ଭଲ କଲୁ, ଭଲ କଲୁ । ନିଜର ରୁଚି ଆଉ ନିଜର ପସନ୍ଦ ଉପରେ ନିଜେ ଝିଅ ବାଛିବା ବରଂ ଭଲ । ସେ ଦାୟିତ୍ୱଟି ଯେ ମୋଠୁ

ନେଇ ମୋତେ ଜ୍ୱାଳିକା କଲୁ । ମୁଁ ଶାନ୍ତ । ନିଜର ଚଏସ୍ ମୁତାବକ, ନିଜେ ଯେ ଝିଅଟିଏ ଯୋଗାଡ଼ କରି ପାଇଲୁ—ଆମେ ବଡ଼ ଖୁସି । ଆଉ ମୋ ମତାମତ କ'ଣ ଖୋଜୁଛୁ, ବଂର ତୋ ବୋଉକୁ ଏ ଖୁସି ଖବରଟା ଶୀଘ୍ର ଜଣାଇଦେ''—

''ଏବେ ତ ଦିନେ ମୋତେ ତୋ ବୋଉ କହୁଥିଲେ ଯେ, ବସନ୍ତ ବାହାଘର ପାଇଁ ଗୋଟିଏ ଭଲ ପାତ୍ରୀ ଦେଖିବୋଲି । ଭଗବାନ ଯାହାକଲେ ଭଲ କଲେ—ତୋ ବୋଉକୁ ନେଇ ଝିଅ ଦେଖେଇ ଆଣ—ତା'ପରେ ଦିନବାର ଧରି ଯାହା କରିବା ।''

ସେଦିନ ବସନ୍ତକୁ ଜଣା ନଥିଲା । ବରଂ ନାରାୟଣ କହୁଥିଲେ ଅହଲ୍ୟାଙ୍କୁ, ''ବସନ୍ତ ପସନ୍ଦ ଯେ ତୁମ ପସନ୍ଦ ସେ । ତୁମର ସ୍ୱା ଭିତରେ ମତାମତ କ'ଣ ? ଏ ପ୍ରଶ୍ନର କି ଉତ୍ତର ହୋଇଥାଇପାରେ । ଅହଲ୍ୟା ଚ୍ଛାଶୁ ପାଲଟି ଯାଇଥିଲେ । ମନରେ ବାରମ୍ବାର ପ୍ରଶ୍ନ ଉଠି ଉଭେଇ ଯାଉଥିଲା । ''ବସନ୍ତର ପସନ୍ଦ, ମୋର ପସନ୍ଦ''—''ହଁ, ହଁ, ମୋର ପସନ୍ଦ''—''ବସନ୍ତ ମୋର ପୁଅ—ସ୍ୱଜରେ ବାହା ହେବାକୁ ଯାଉଛି । ମୋର ସେଥିରେ କହିବାର କ'ଣ ଅଛି । ଫେରି ସେ ତା'ର ନିଜ ପସନ୍ଦ ନିଜେ କରିଛି ।'' କଳିଯୁଗ ସ୍ୱେଚ୍ଛାଚାରୀ ଯୁଗ—ସ୍ୱାଧୀନତାର ଯୁଗ—ତାଙ୍କର ଯୁଗ ଏ, ଯୁଗ ଭିତରେ ବହୁତ ତଫାତ୍ । ସ୍ୱେଚ୍ଛାଚାରୀର ସ୍ୱାଧୀନ ଶତ ଶତ କହି ଚାଲିଛି ଅନିୟମିତ ପରିବେଶ ଭିତରେ । ସ୍ୱେଚ୍ଛାଚାରୀର ମୁଖରିତ ଧ୍ୱନୀରେ ସତେ ଯେପରି ପବନ ବି କହୁଛି ''ମୁଁ ସ୍ୱାଧୀନ—ମୋର ମନ ବି ନିଜସ୍ୱ ଓ ସ୍ୱତନ୍ତ୍ର'' । ସ୍ୱାଶ ଭିତରେ ନିଜର ମନ ଯତାଇ ଉଡ଼ିବାକୁ ହେବ । ନ ହେଲେ—ନ ହେଲେ ଅଗ୍ନିର ଲେଲିହାନ ଶିଖାରେ ଝାସ ଦେବାକୁ ହେବ ନିଜକୁ । ନିଜର ବ୍ୟକ୍ତିତ୍ୱକୁ । ସେ ଉତ୍ପାତ୍—ଖାଲି ଯନ୍ତ୍ରଣା, ଅଶାନ୍ତି, ଅଶାନ୍ତ । ବିଦଗ୍ଧର ଉଦ୍‌ଗାରଣ—ଅହଲ୍ୟା ମୁଣ୍ଡ ହଲାଇ କହୁଥିଲେ ''ହଁ ମୁଁ ଦେଖିଯିବି ।'' କିନ୍ତୁ ସେ ଦେଖାର ମାନେ କ'ଣ ହୋଇପାରେ—ଉପର ଠାଉରିଆ କଥା ଜାଣା—ମା ହୋଇ ପୁଅ ପାଖରେ । ତା ହେଲେ ନିଜର ବିବେକ ବାଧାଦିଏ । ପ୍ରଖର ନଦୀର ସ୍ରୋତଟି ବହି ଚାଲିଛି, ତା'ର ଛନ୍ଦରେ । ଆଉ ମୀନ ମଧ୍ୟ ସେ ଜଳରେ ଭାସି ଭାସି ଯାଉଛି, ସ୍ରୋତ ଧାରେ ଧାରେ—ଏହି ତ ଜୀବନର ଛନ୍ଦ । କେହି କାହା ପାଇଁ ନ କହିଲେ ମଧ୍ୟ ଅନେକ ସମୟରେ ନିଜକୁ ନିଜର ବିବେକକୁ ସଞ୍ଚିତ କରାଇ ଚେତନାଶୀଳ କରାଏ । ଏହି ପୃଥିବୀର ପ୍ରକୃତି ଯେ ତାକୁ ବୁଝେ ଓ ବୁଝାଏ । ଅହଲ୍ୟା ଶକ୍ତି ପାଇଲେ ପ୍ରକୃତିଠାରୁ ।

ଗୋଟିଏ ପରିବାରର ଗଠନ, ଗୋଟିଏ ସଂସାରର ଗଢ଼ିବା ଦାୟିତ୍ୱ ଯେ ତାଙ୍କ ଉପରେ ନ୍ୟସ୍ତ । ପ୍ରତ୍ୟେକ ସମାଧାନ ଯେପରି ଭାବି ଚିନ୍ତି କରିବାକୁ ହୁଏ, ପ୍ରତ୍ୟେକ ମନ, ପ୍ରତ୍ୟେକଙ୍କ ରୁଚି, ପ୍ରତ୍ୟେକଙ୍କୁ ସୁଖି କରିବାକୁ ଯାଇ ଅହଲ୍ୟାଙ୍କର ସଂସାର ମଞ୍ଚରେ ନାୟିକାର ଭୂମିକା ତୁଲାଇବାକୁ ହୁଏ । ତାଙ୍କୁ ବିଦଗ୍ଧ—ବେଘର ହୋଇ, ଅନ୍ୟକୁ ସୁଖି କରିବାକୁ ହେବ । ସେ ସୁଖି ସଂସାର କରି ପାରୁଛନ୍ତି କି ନାହିଁ, ଆତ୍ମ-ବଳ ଓ ଆତ୍ମ ବିଶ୍ୱାସର ଚରମ ଅଗ୍ନିପୂତ ଆଗ୍ନାହୁତି ଦେଇ—ବିଦଗ୍ଧ ନାୟିକା ସାଜିବାକୁ ହେବ । ଜଳି ଜଳି ନିଜେ ବଳିତାର ଆଲୋକରେ ସଂସାରଟିକୁ ପଥ ତାଙ୍କୁ ଦେଖାଇବାକୁ ହେବ ।

ନିଜର ଦହନ, ନିଜର ଜ୍ୱଳନ, ନିଜ ମନର କୌଣସି ଭାବକୁ କିଏ ବା ଏ ଘରେ ଗ୍ରହଣ କରିବାକୁ ଚାହେଁ । କାହାକୁ ନିଜର ମନଖୋଲି କହି ପାରିବେ ? କିଏ ବା ଶୁଣି, ବୁଝି, ବୁଝାଇ ଶାନ୍ତ କରି ପାରିବ, ମନର ଅଗ୍ନି । ଏତେବଡ଼ ସଂସାର ଯେପରି ନିଜ ପାଇଁ ନିଜେ ଏକୁଟିଆ ଲାଗେ । ବିଦଗ୍ଧ ଅଗ୍ନିରେ ଜଳିଜଳି ନିଜେ ଯେତେ ପୋଡ଼ିଗଲାପରି ଲାଗେ । ହସି, ହସି ବିଶ୍ୱେ ନାରାୟଣ ଫରମାସି କରି ଚାଲି ଯା'ନ୍ତି, କାମ ଉପରେ କାମ, ଦାୟିତ୍ୱ ଉପରେ ଦାୟିତ୍ୱ—ବୋଝ ଉପରେ ଲଳିତା ବଡ଼ାପରି ଲାଗେ ଅହଲ୍ୟାଙ୍କୁ । ନିଜର ମନବଳ, ନିଜର ଆତ୍ମବଳ ସାହାଯ୍ୟରେ ସେ ପାଆନ୍ତି ନିଜେ ଚଳିବାର ଶକ୍ତି—ଶକ୍ତି ସାମର୍ଥ୍ୟର ଗୋଟିଏ ମୂର୍ତ୍ତିମନ୍ତ ପ୍ରତିମା ପରି । ନିଜକୁ ପ୍ରକୃତି ସତେ ଯେପରି ଗଢ଼ିଥିଲେ ।

ବେଳାବେଳେ ମନ ତଳେ ନିରୁତ୍ସାହର ଗ୍ଲାନି ଉଙ୍କି ମାରେ । ସତ୍ୟର ସୁର ଭିତରେଣୁ ଝରିପଡ଼େ ସତେ ଯେପରି ଏହି ଦ୍ୱାହି ବିବେକର ଡାକସ୍ୱରେ । ନିଜକୁ କଷଟି ପଥରରେ କଷି କଷି ଖାଣ୍ଟି କରିଦିଏ । ନିଜର ବିଶ୍ୱାସ, କାର୍ଯ୍ୟର କୁଶଳତା ଉପରେ ଯେପରି ସଂସାରଟି ଭାସୁଛି । ଅହଲ୍ୟା ଉଠନ୍ତି, ଆଖିର ଲୁହ ପଣତ କାନରେ ପୋଛି । କେତେ ନିରବ ଅଶ୍ରୁ ସମ୍ବଳିତ ତାଙ୍କ ଜୀବନ ଇତିହାସର ପୃଷ୍ଠା ଯଦି ସ୍ୱାଗତ କରେ ଶୁଭକୁ, ତେବେ ଜୀବନର ସ୍ୱାର୍ଥ କିଛି କମ୍ ନୁହେଁ—ଅହଲ୍ୟା ପ୍ରାୟ ସବୁ ଭୁଲି ଯାଇଛନ୍ତି—ନିଜକୁ ନିଜେ ମଧ୍ୟ, ଏହି ସଂସାର ଭିତରେ । କାହାରି ସହାନୁଭୂତି ସ୍ନେହ ତ କଣିକାଏ ପାଇଲେ ପରି ମନେ ହୁଏ । ଗୋଟାଏ ଗୋଟାଏ ଗୁରୁ ଦାୟିତ୍ୱର ବୋଝରେ, ଅହଲ୍ୟା ଅଣନିଶ୍ୱାସୀ ହୋଇଯା'ନ୍ତି । ସବୁରି ସମ୍ପଦ ଚର୍ଣ୍ଣି

ରୂପ—ଗୋଧୂଳିର ସନ୍ଧ୍ୟା ଆସର ବେଳାରେ । କେତେବେଳେ ସବୁ ଆସି ସୃଷ୍ଟିଯାଏ । କେତେବେଳେ ଶୁଭ୍ର ସକାଳର ବେଳା ଅନ୍ଧକାର କରି ନିଜକୁ ସୃଷ୍ଟି ଯାଏ—ଅହଲ୍ୟାଙ୍କ ପାଖରେ ତାର ସ୍ୱଭାବ ରହେନି । ବିଶେଷ କରି ବିରଞ୍ଚି ନାରାୟଣଙ୍କର ଅବହେଳା ଅହଲ୍ୟାଙ୍କ ପ୍ରତି—ପ୍ରତି କ୍ଷଣରେ ସେ ଯେପରି ଶଙ୍କିତ ହୁଅନ୍ତି ।

ଅତଳ ସମୁଦ୍ରରେ ପୋତଟି ଲଙ୍ଗର ବିନା ଯେପରି ଭାସୁଥାଏ, ଅହଲ୍ୟାଙ୍କ ଜୀବନ ତରୀଟି ମଧ୍ୟ ତାର ଆଶ୍ରା ନିଏ, ଭରସାହୀନାର ଭରସା—ଆଶ୍ରୟ ହୀନାର କଥା, କିଏ ବା ରଖିପାରେ ? କିଏ ବା ବୁଝିପାରେ ? ଏହି ସଂସାରଟା ସତେ କ'ଣ ତାଙ୍କ ଉପରେ ନ୍ୟସ୍ତ ! ପର ଘରେ ଦାସୀର ଭୂମିକା କଲାପରି ନିଜର ବିଶ୍ୱାସ ଜନ୍ମେ— ଯେଉଁ ବିଶ୍ୱାସରେ ନିଜର ସୁଖ—ଆନନ୍ଦ—ସବୁ ଯେପରି ଜଳପୋଡ଼ି ପାଉଁଶ ହୋଇଯାଏ । ଅଶ୍ରୁର ପାଣ୍ଡୁଲିପି ତାଙ୍କର ଧମନୀରେ ରୂପାନ୍ତର ନେଉଛି କି ନାହିଁ ସେ ସନ୍ଦେହରେ ସୃଷ୍ଟିହନ୍ତି । ବସନ୍ତ ଆଉ ଛୋଟ ପିଲା ହୋଇ ନାହିଁ । ତା'ର ବାହାଘର—ନିଜେ ସେ ଝିଅ ପସନ୍ଦ କରିଛି । ଅହଲ୍ୟାଙ୍କ ପସନ୍ଦ କ'ଣ ତା'ର ପସନ୍ଦ ହୋଇ ପାରେନାଁ ? ଏହି 'ନାଁ' ପଦକ ଏତେ ଯୋରରେ ବିବେକରେ ବାଧା ଦେଲା ଯେ, ଅହଲ୍ୟା କହିଲେ—"ହଁ, ହଁ, ବସନ୍ତ ଯେଉଁଠି ବିବାହ ଠିକ୍ କରିଛି ମୋର ସେଥିରେ ବାରଣ କରିବାର କିଛି ନାହିଁ । କେଉଁଦିନ ଝିଅ ଦେଖିଯିବା ଠିକ୍ କର—" ବିରଞ୍ଚି ନାରାୟଣ କେତେବେଳୁ ଯାଇ ସାରିଲେଣି ଅହଲ୍ୟାଙ୍କ କଥା ଶୁଣିବାକୁ ନାହାନ୍ତି । ଅହଲ୍ୟାଙ୍କର ସେଥିପ୍ରତି ଲକ୍ଷ ନାହିଁ ।

ଝିଅ ଦେଖିଛନ୍ତି ଅହଲ୍ୟା । ବିରଞ୍ଚିନାରାୟଣ ମଧ୍ୟ ଆଡ଼ମ୍ବରପୂର୍ଣ୍ଣ ବାହାଘର କରି, ନିଜ ମନର ଅରମାନକୁ ରୂପ ଦେଇଛନ୍ତି । ଏହି ବାହାଘରରେ ସୁସାନ୍ତର ଖୁବ ଆନନ୍ଦ ଓ ଆଗ୍ରହ । ପ୍ରତ୍ୟେକ କାମରେ ଯେପରି ଚଞ୍ଚଳ—ପାଣି ପରି କାମ କରେ । ତା ଭାଇର ବାହାଘର—ଭାଉଜ ଆସିବେ, ତାଙ୍କୁ ଖୁସି ନ ଲଗିବ ତ ଆଉ କାହାକୁ ଖୁସି ଲାଗିବ ! ବାପାଙ୍କୁ ତାଗିଦ୍ କରିଦେଉଛି, "ବାପା, ଏଇଟା କଲେ ଭଲ ହେବ, ସେଇଟା ମୁଁ କରିଦେବି, ଏପରି ସଜାଇବା, ଏପରି ବାଜା ବାଣ ଫୁଟିବ ଇତ୍ୟାଦ, ଇତ୍ୟାଦ ।" ସେ ଚପଳମତି କିଶୋର—ଆଇ. ଏ. ସେକେଣ୍ଡ ଇୟରରେ ପଢ଼େ । ତା'ର ଚଞ୍ଚଳ

ମନ—ମନ ଖୁସି ଯେ ଝିଅ ତା'ର କୋର୍ଟ ମ୍ୟାରେଜ କରିନାହାନ୍ତି; ବିଶେଷକରି ଲଭ ମ୍ୟାରେଜରେ କୋର୍ଟରେ କରନ୍ତି, କିନ୍ତୁ କହନ୍ତି ଯେ ଅନ୍ୟ ପିଲାମାନଙ୍କଠୁ ଭିନ୍ନ ଏକଥା ଭଲକରି ଜାଣେ ସୁଶାନ୍ତ। ବୋଉକୁ ବେଳେବେଳେ ତାଗିଦ୍ କରି ଦିଏ, ଏ ବିଷୟରେ ସେ ଯେପରି କୌଣସି ପ୍ରକାର ମନ କ୍ଷୁଣ୍ଣ ନକରେ ଆଉ କୁହାବୋଲା ନକରେ।

ଆଉ ସିପ୍ରା ତା କଥା ତ କହିଲେ ନସରେ। ତା ଭାଉଜ ଆସିବ ବୋଲି ତ ତା ଗୋଡ ମୋଟେ ତଳେ ଲାଗୁନି। ଏହାଟି କଣ ହେବ, ସେ ଗହଣା କଣ ହେବ ବୋଲି ବାପାଙ୍କ ସାଥିରେ ଖାଲି ଲାଗିଛି। ଗୋଟାଏ ଡାଇମଣ୍ଡ ସେଟ୍ କିଣା ହେବ ଭାଉଜ ପାଇଁ। ବାପା ବୋଉ ଦେଖୁଛନ୍ତି, ନିଜ ପାଇଁ ସେ କହୁନାହିଁ, ଭାଉଜ ପାଇଁ କହୁଛି। ସତେ, ସେ କେତେ ଭଲପାଏ ବସନ୍ତକୁ। ଆଗେ ତ ସିପ୍ରାର ବିଭାଘର ହୋଇ-ଥାନ୍ତା—ଝିଅ ବିଦା ହେବା ପରେ ବୋହୂଟିଏ ଘରକୁ ଆଣିବାକୁ ଚାହୁଁଥିଲେ ବିରଞ୍ଚିନାରାୟଣ। କିନ୍ତୁ ବିଧିର ବିଧାନ ଅନ୍ୟ ପ୍ରକାର। ସେ ଚିନ୍ତା କରନ୍ତି, "ହେଉ ଯେଉଁଆଡ଼େ ଯାଉଛି ଯାଉ। ଭଲ ବରପାତ୍ର ତ ମିଳିଲେନି ସିପ୍ରା ଯୋଗ୍ୟ ନେଇ, ଆରବର୍ଷ ଦେଖିକି ଉଠାଇ ଦେଲେ ହେବ। ବି. ଏ. ପରୀକ୍ଷାଟା ବି ସରିଯାଇଥିବ।"

ଅହଲ୍ୟା ନିଜ ମନକୁ ନିଜେ ପ୍ରବୋଧନା ଦେଉଥିଲେ—କାହାନ୍ତି ବିରଞ୍ଚିନାରାୟଣ। ଏତେ କାର୍ଯ୍ୟବ୍ୟସ୍ତ ଯେ, ଅହଲ୍ୟା ସ୍ଥିତି ପରିସ୍ଥିତିରେ ଯେପରି କି ଭାଗ ନେବାକୁ ଭୁଲିଯାନ୍ତି। ସମୟର ଚକ ଘୂରି ଚାଲିଛି। ମଣିଷ ତା'ର ସୁଖ ଦୁଃଖ, ଭଲ ମନ୍ଦ ଧରି ଘୂରି ଚାଲିଛି ସେଇ ସମୟର ତାଳରେ—ପବନର ତରଙ୍ଗରେ ଉଠୁଛି ପଡୁଛି। ସ୍ୱପ୍ନଭରା ମନ ଉପରକୁ ଉଡୁଛି ଫେର୍ ନୂତନ ସ୍ୱପ୍ନର ଜାଗରଣ ତୋଳୁଛି। ଉତ୍ଥାନ ଓ ପତନ—ପତନ ଓ ଉତ୍ଥାନ—ସତେ କି ଭେଳା ଡଙ୍ଗା ପରି ଏ ଜୀବନର ନାଆଟା···।

ଆଜି ଅହଲ୍ୟା ଦେଖନ୍ତି ତାଙ୍କର ଉତ୍କଣ୍ଠା ମନରେ—ବସନ୍ତଠୁ ଚିଠି ପାଇବାରେ ଡେରି ହୁଏ। ଋତୁ ଓ ବସନ୍ତ ଦୂରରେ, ତାଙ୍କ ପାଖରୁ। ଇସ୍ପାତ ନଗରୀ ରାଉରକେଲା ବହୁତ ଦୂରରେ। ଅହଲ୍ୟା ଝିଅ ଲାଗି ଅନାଇ ବସିଥାନ୍ତି।

ଘରେ ତ ଯେପରି ସାରା ସଂସାରଟା ତାଙ୍କର, କେବଳ ତାଙ୍କର । ସେଠି କାହାର ଆଉ ଆଧିପତ୍ୟ ନାହିଁ । ସେଠି ସିଏ ଦେଖି ପାରନ୍ତିନି କାହାର ଅବହେଳା, କାହାର ଦରଦ । ଏ ତ ନିଜର ମନ—ମା'ର ମନ, ସ୍ତ୍ରୀର ମନ । ସେଠି ଅନ୍ୟର ବା ପ୍ରଶ୍ନ ଉଠୁଛି କେଉଁଠି ? ସେ ଦେଖନ୍ତି ତାଙ୍କ ମନ ଯାହା ଏ ଘରର ମଣିଷ କରିବାକୁ କୁଣ୍ଠିତ । ପ୍ରତ୍ୟେକ ପିଲା ତାଙ୍କ ମନରେ ନିଜସ୍ୱ । ତା ପରେ ବରଷ୍ଣିନାରାୟଣ ସେ କ'ଣ ଭାବନ୍ତି ସେ ନିଜେ ଜାଣନ୍ତି । କିନ୍ତୁ ଅହଲ୍ୟା ବେଳେବେଳେ ବଡ଼ ମର୍ମାହତ ହୋଇପଡ଼ନ୍ତି । ତାଙ୍କୁ ଯେପରି ମନେହୁଏ, କଣ୍ଟା ଘାରେ ଚୂନ ବୋଳିବା କ'ଣ ବରଷ୍ଣିନାରାୟଣଙ୍କ ଗୁଣ ? ତା ନହେଲେ··· । ସେ କୌଣସି ସମାଧାନରେ ପହଞ୍ଚି ପାରନ୍ତି ନାହିଁ । ଭାବନ୍ତି, "ହଁ, ଏହି ସଂସାରଟା ଯେପରି ତାଙ୍କ କଥାକୁ ଅନାଇ ବସିଛି, ତାଙ୍କ ମନକୁ ନେଇ ଘର ସଂସାର ଚାଲୁଛି ନା ଚାଲିବ...?" ମନରେ ଅନେକ ପ୍ରଶ୍ନ । ପ୍ରତ୍ୟେକ ମଣିଷର ଚଳଣି ଭିନ୍ନ, ମନ ଭିନ୍ନ, ରୁଚି ଭିନ୍ନ, ଖାଇବା ଭିନ୍ନ—ସବୁ ଭିନ୍ନ । ତେବେ ଏକଜିଦ କରିବାର ଶକ୍ତି ବା ଅହଲ୍ୟାଙ୍କର କିପରି ଆସି ପାରେ ? ତଥାପି କରନ୍ତି ଯାହା କରିବା କଥା । ଭାବନ୍ତି ଚାଲୁ ଦେଉଁଯାଏ ଯିବ । ଅହଲ୍ୟାଙ୍କର ଧିମେଇ ପଡ଼ିବା ମନ କିନ୍ତୁ ଚାଲିବାର ଶପଥ ନେଇଛି, ସେଇଟା ବାରମ୍ବାର ଚେତାଇଦିଏ । ସେ ଯଥୌଚିତ୍ୟ ମନୋଭାବରେ କର୍ତ୍ତବ୍ୟରେ ଉଚ-ବସ ହୁଅନ୍ତି । ଏ କ'ଣ ଗୋଟାଏ ହତାଦର କି ଅବହେଳା ହୋଇପାରେ ? ମନର ଚେତନା ଆଘାତ ହୁଏ । ସ୍ୱାଗତ ସମୀର କେଉଁ ବେଳା ପାରେ ବସି ଲହରୀ ଭାଙ୍ଗିଯାଏ ।

ଋତୁ ଆଉ ବସନ୍ତଙ୍କ ସମୀର ସ୍ୱାଗତ କରୁଛି, କୋଇଲି ସ୍ୱର କୁହୁକରେ ଯେପରି ଛଳିଆ କୃଷ୍ଣ ମୁରଲୀରେ ସ୍ୱର ଦେଲେ ଲାଗେ । ଆଉ ଉଚ୍ଛୁଳା ସ୍ୱରର ଲହରୀରେ ଫୁଲ କିପରି ଫଗୁଣର ଦୋଳରେ ଦୋଳି ଖେଳେ । ଫଗୁଣର ମହୁଲି ମନଛୁଆଁ ଲଗ୍ନ ମନକୁ ହଜାଇଦିଏ ପ୍ରକୃତିର କୋଳରେ । ଉଦ୍ଦାମ ମନର ଲଗାମ ଛଡ଼ା ପ୍ରକୃତି—ପ୍ରକୃତିର ପରିବେଶରେ ହଜି ଯିବାକୁ ଚାହେଁ । ମନର ସ୍ୱତଃ ପ୍ରବାହମାନର ଫଲ୍‌ଗୁ ଧାରାରେ ଲୁଚି ଯିବାକୁ ଚାହେଁ । ଛନ୍ଦ ତା'ର ଲଳିତ—ଗତି ତା'ର ମଧୁର । ସେ ମନ ଗୋଟିଏ କିଶୋର ଆଉ ଗୋଟିଏ କିଶୋରୀର । ସ୍ୱପ୍ନରେ ଭାସିବା ମନ ଦୁର୍ଭେଦ୍ୟ ପ୍ରାଚୀରକୁ ଲଙ୍ଘନ କରିବାକୁ ଚାହେଁ । ହଜି ହଜାଇ ଦେବାର ସ୍ୱପ୍ନ ବଖାଣ କରୁଛି, ମହୁଆଳି କରି ଡାକୁଛି ଦୁଇଟି ନବ ଦମ୍ପତିକୁ । ସେ ଆହ୍ୱାନ

ପ୍ରକୃତ ଆଉ ପୁରୁଷର ଅନାଦି କାଳର ଚନ୍ତା ବସ୍ତରେ ମଣ୍ଡିତ । କେଉଁ ଦୂର ଆକାଶରେ ତରଙ୍ଗ ଖେଳାଇ ମିଶି ଯିବାକୁ ଗୃହେଁ ତା'ର ଦେଶାର କୃତଜ୍ଞ ବନ୍ଧାର କରି କର । ଇତିହାସ ପୃଷ୍ଠାରେ ଲେଖିବା ପାଇଁ ସେ ଉଦ୍ଭବ, ଉଦ୍ଭବ ସେ ଆନ୍ଦ୍ରର ଉପରକୁ ଉପରକୁ—ଡେଡ୍‌ଲେସ୍ ଫେଦରଫର୍କର କାହାଣୀ ପରି ହେବ ନାହିଁ ତ ? ରୂପସାଗରର ଉପକଥା ଦେଖିବା ପାଇଁ ଆଉ ନୂତନ ମୃହ, ନୂତନ ନଜ ଚେଷ୍ଟିତାର ଦୃଢ଼ ମନବଳ ଖୋଜୁଛୁ ଆଉ ନଜର ସ୍ୱପ୍ନ ସାର୍ଥକ କରିବାକୁ ଗୃହୁଁଛୁ । ଉଡ଼ୁଛୁ, ଖାଲି ସେ ଉଚାଟ ମନ ତଳେ ଉଡ଼ିବାର ଭାବନା ଉଦସ୍ତ ହେଉଛୁ ଋତୁ ଆଉ ବସନ୍ତର ।

ଉଠିବା, ପଡ଼ିବା ତ ଏ ଜୀବନର ଗତି, ଏହା ବ ମଣିଷ ବୁଝି ପାରେନା । ବୁଝିଲେ ବ କିଛୁ କର ପାରେନା । ଯେପରି କ ତା ହାତରେ କିଛୁ ନାହିଁ । ସ୍ନେ ଗୃହେଁ ଉପରକୁ କାହାର ଶକ୍ତ ପାଇବାକୁ । ଅଦୃଶ୍ୟ ଦେବତାର ଅଦୃଶ୍ୟ ବନ୍ଧାକୁ ଗୃହିଁ ରହେ । ଦିନ ଅତିକ୍ରମ କରିଯାଏ । ଶୁଣାନ୍ତର ପରୀକ୍ଷା ସରେ । ଆଉ ଗୋଟିଏ ବୋଟ୍ ପାଇଁ ମନର ବ୍ୟାକୁଳତା ବଢେ ବରଞ୍ଚ ନାଗ୍ୟବ୍ୟକ୍ତଙ୍କର । ସେ ଗୃହାନ୍ତ ଶୁଣାନ୍ତର ବାଇଘର କରିବେ । ସିପ୍ରା ଆଉ ଋତୁ, ନଣନ୍ଦ ଭାଉଜ ଆସିଥି ନ୍ତ । ଆଉ ଗୋଟିଏ ଫୁଲକୁ ଘରେ ବାନ୍ଧିବାକୁ ବ୍ୟସ୍ତ । ଧାଁ । ଧପଡ଼, କାମ ଧନ୍ଦା, ଚୂନ ବୋଳା, ବଡ଼ପରି ଇତ୍ୟାଦି । ଲୋକବାକରେ ଖଞ୍ଜା ଫାଟୁଛୁ । ସିପ୍ରା ଆଉ ଦୌଡ଼ି ପାରୁନ, ଯାହା କରୁଛୁ ଋତୁ ।

ସିପ୍ରାର କ'ଣ ପିଲ୍ ପିଲ୍ ହେବ । ଗତ ବର୍ଷ ବାଇଘର—ଖୁବ୍ ଚଞ୍ଚଳ ପିଲ୍ । ଲୋକଙ୍କ ଜଜ୍ଞାସା ଚକ୍ଷୁକୁ ଋତୁ ଦେଖୁଛନ୍ତ । ଅନେକ ଲୋକଙ୍କୁ ଅନେକ ପ୍ରଶ୍ନ । ଉତ୍ତର କିଛୁ ହୋଇନ । ପ୍ରଶ୍ନଟି ମନତଳେ କେତେ କଥା ଲେଖୁଛୁ । ସିପ୍ରା ଏବେ ବଡ଼ହୋଇ ପିଲ୍‌ପିଲ୍-ହେବ । ବସନ୍ତ ବାଇଘର ତ ପାଞ୍ଚବର୍ଷ ହୋଇଗଲା—ଦେବୀ ପ୍ରଥମା ପରି ଚେହେରା ବୋହୂ କେଉଁଠି ଖୁଣ ଅଛୁ ବୋଲି କିଏ କହିବ । ଫେର ଶାଶୁଙ୍କ ମନ ତଳେ କ ଲେଖା ଅଛୁ ଜାଣେନା । କେବେ କେମିତି କିଏ ପଚାରିଦେଲେ ଅହଲ୍ୟା କୁହନ୍ତ "ହେବ, ହେବ, ଚଞ୍ଚଳ ନ ହେଲେ ଭଲ । ପିଲାମାନେ ଟିକିଏ ହସି ଖେଳି ନଅନ୍ତୁ । ଅନେକ ଦେଖିବାକୁ ମିଳେ, ବାରବର୍ଷରେ ବ ତ ଗଛ ଫଳେ"—ଅହଲ୍ୟା ସିନା ମୁହଁରେ କହି ଦଅନ୍ତ କିନ୍ତୁ ଅହଲ୍ୟା ଗୃହାନ୍ତ, ହେଲେ କେବେ ଗଛ

ଫୁଟିବ ? ଫଳ ସେ ଦେଖିବେ ? ଶ୍ରେଷ୍ଠ ବସନ୍ତ ତା ନାଁ ଦେବେ । ପିଲା ରୂପରେ ବସନ୍ତକୁ ଦେଖିବାକୁ କାହିଁକି ବହୁତ ଇଚ୍ଛା ପ୍ରବଳ ହୁଏ । ଅହଲ୍ୟା ଦୀର୍ଘ ନିଶ୍ୱାସ ଛାଡନ୍ତି । ସ୍ୱପ୍ନ ସତ୍ୟ କେବେ ସମ୍ଭବ ହେବ । ବସନ୍ତର କେବେ ପୁଅ ହେବ ମୁଁ ଦେଖିବି । ଯେତେ ମନକୁ ବୁଝାଇଲେ ବୁଝେନା । ଅବୁଝା ମନ ଜିଦ୍ ଧରେ— ଅନେକ ପ୍ରଶ୍ନର ବିଶେଷତ୍ୱ ଗୋଟିଏ ପ୍ରଶ୍ନରେ—ମନକୁ କ୍ଷାନ୍ତ କରେ । "ଲୋକଙ୍କ କୁହା କ'ଣ ସତ ? ସମ୍ଭବ ହୋଇପାରେ ? ନାଁ, ନାଁ, କେବେ ନୁହେଁ"—ତେବେ ମନର ଭିତର ମନକୁ ଡରାଏ କାହିଁକି ? ଆରେ, ଏତେ ସୁନ୍ଦର ବୋହୂ—ଗୋଟିଏ ଛାଞ୍ଚରେ ଗଢା । ସାକ୍ଷାତ ଲକ୍ଷ୍ମୀ ପରି—ତା'ର କୋଳ ଶୂନ୍ୟ ହୋଇପାରେ କେବେ ? ନିଜ ପାଖରେ ନିଜକୁ ଅସ୍ୱୀକାର କରିବା ଲାଗି ମନ ଲୁହେ । ହେବ, ହେବ, ଡେରି ହୋଇନି, ଡେରି ହୋଇନି !! ହେଉଚି କାଲି ସକାଳେ ସିପ୍ରା ବିଭାହୋଇଛି ତା'ର କୋଳ ଭରି ଯେ ସେ କାମ କରିପାରୁ ନାହିଁ ଶୁଣାନ୍ତି ବାହାଘରରେ ।" କେହି ନଥିବାବେଳେ ସ୍ୱଗତ ମନେ ମନେ ଅହଲ୍ୟା । ଆଉ ତାଙ୍କର ମମତାଭରା ମା ହୃଦୟ କିପରି ହାଃ, ହାଃ, କାର କରି ଉଠେ । ବସନ୍ତ କ'ଣ ମୋର ବାପା ଡାକ ଶୁଣିବନି ? ବ୍ୟାକୁଳ ହୃଦୟରେ ସେ ସ୍ୱଗତ—ପିଲା ଦିନର ଅଳି ଅର୍ଝଟ ଭରା ବସନ୍ତ । ତାଙ୍କର ପ୍ରାଣର ବସନ୍ତକୁ ସେ ଦେଖନ୍ତି--କିପରି "ମା, ମା" ଡାକରେ ପାଗଳ ହୋଇ ଦାଣ୍ଡ ବାରି ଖୋଜି ବୁଲୁଥାଏ । ଦୀର୍ଘ ଯତେଇଶ ବର୍ଷ ତଳର ସେ ବସନ୍ତ ନିଜର ମମତାର ଅସଂଖ୍ୟ ଢେଉରେ ସେ ଯେପରି ନିଜର ବଡ଼ ଆଦରର ଶିଶୁକୁ କୋଳରେ ଚାପି ଧରି ଗେଲ କରନ୍ତି ।

ଭୁଲାଇବା, ହସାଇବା, ପିଲଙ୍କ ସାଥିରେ ମମତାର ଖେଳ ଖେଳିବାକୁ ତାଙ୍କର ଚିନ୍ତା, ଆଗ୍ରହ ସବୁକିଛି ଥିଲା ତାଙ୍କରି ହସ ଖେଳ ଭିତରେ ଏତେ ବାଟ ଯେ ହସି ହସି ଚାଲିଆସିଛନ୍ତି । ଆଜି ସେ ପକ୍ୱ କେଶରାଶିରେ ଦେଖି ସହି ହୁଏ ନାହିଁ । ଆଉ ମୋର ବସନ୍ତ ଆଉ ଋତୁ । ନା, ନା—ମନ କହିଉଠେ ଯେପରି ପଙ୍କରୁ ପଦ୍ମ ଜାତ । ସେଇପରି ଶୋକବିହ୍ୱଳ ମନ ତଳୁ ସ୍ୱାନ୍ତ୍ୱନାର ଶାଶ୍ୱତ ଧର୍ମ କହିଉଠେ । ନା, ନା ବେଶି ଡେରି ହୋଇନି । ବାହାଘର ଜମା ତ ପାଞ୍ଚ ବର୍ଷ ହୋଇଛି । ଜଣ ଜଣଙ୍କର ତ ଦଶ, ବାର ବର୍ଷରେ ଗଛ ଫଳିବାର ଦେଖାଅଛି ।

"ହେବ—ଡେରରେ ଫଳିବ ।" ଅହଲ୍ୟା କୋଳରେ ଧରବେ, ମନ ପୁର୍ଣ୍ଣର ଖେଳ କରିବେ, କାହାକୁ ଦେବେନି । ସେ ହେବ ତାଙ୍କ ବଂଶର, ତାଙ୍କ ରକ୍ତର ଅସ୍ମିତା, ଧାରା । ଶୁଣି ଯିବନ । ଠିକ୍ ପିଲାଦିନେ ବସନ୍ତ ଯେପରି ଗୁଲୁଗୁଲିଆ ହିଁଏ ହୋଇଥିଲା ତାର କୁଣ୍ଢେଇବି ପରି ଠିକ୍ ସେହିପରି ହେବ । ଅହଲ୍ୟା ମନକୁ ମନ କୁହନ୍ତି "ଆରେ ବାଉଳା ମନ, ଧୈର୍ଯ୍ୟ ଧର—ଫଳିବ, ଫଳିବ, ଡେରରେ ଫଳିବ ।" ଭଗବାନଙ୍କ ଘର ଡେରିଅଛି ସିନା, ଜବାବ ନାହିଁ—ହତାଶ ନାହିଁ ।

ଅହଲ୍ୟା ଅଗଣାକୁ ଅନାନ୍ତି—ଶିପ୍ରା ପେଟ ଭାରରେ ଚାଲି ପାରୁନି । ବଗିଚା ଅନେକ ଦିନରୁ ଅନାଥ ହୋଇଯାଉଥାଏ । ଭଗବାନ କରିଛନ୍ତି, ଭଲ ଘରଟି ପାଇଛୁ । ଶାଶୁ ତ ନାହିଁ—ଶଶୁର ତ ଅଶ୍ରିତ ବି ଲୋକ । ଶିପ୍ରାର ଦୁଇଟି ବଡ଼ ଯା, ଆଉ ସାନ ନଣନ୍ଦ କେଉଁଦିନୁ ବାହା ହୋଇ ଗଲେଣି । ଯା ଦୁଇଜଣ ଯେ ଯାହା ପିଲା କୁଟୁମ୍ବ ନେଇ ବିଦେଶରେ । ଆଉ ଶିପ୍ରାର ପୁଅ୍ଝିଅ ଡାକ୍ତର—ଘରେ ତ ଘଣ୍ଟାଏ ରହିବା କଥା ନୁହେଁ । ରୋଗୀ ଯଦି ଆସିଯାଇଥିବେ ଦିନଯାକ ନ ଖାଇ ନ ପିଇ ତାଙ୍କର ସେବାରେ ଲାଗିଥିବେ । ରୋଗୀଫୋଗି ପଡ଼ିଥିଲେ ଜଣେ ତ ଖାଇବା ଭୁଲିଯାନ୍ତି—ସଅଳ ଘରକୁ ଫେରିବାଟା ହୁଏ ନାହିଁ । ଆଉ ସେଠି ଘର ତ ବହୁତ ଦୂର କଥା ।

ଶିପ୍ରାଟାର ଏପରି ଅବସ୍ଥା ଦେଖି ବଡ଼ବାବୁ ନେଇ ଆସିଛନ୍ତି । ଅହଲ୍ୟାଙ୍କ ଏକାନ୍ତ ଜିଦ୍—ଯେତେ ବଡ଼ ଡାକ୍ତର ହେଉନା କାହିଁକି ମା ପାଖରେ ପିଲା ରହିଲେ ସେବା, ଯତ୍ନ, ଆଦର, ଗୌରବ ପାଇବ । ତା ଛଡ଼ା ସେ ତ ତା ଘରକୁ ଯିବାକୁ ଚାହିଁବ । ଅହଲ୍ୟାଙ୍କର ବା ଏଥିରେ କ'ଣ କହିବାର ଅଛି । କିନ୍ତୁ ପ୍ରଥମ ପୁଅଝିଅ ବାପ ଘରେ ହେବାର ଆମ କୁଳର ପ୍ରଥା—ପୁରାଣ ଯୁଗରୁ ଚଳି ଆସୁଛି । କହନ୍ତି କି ଶ୍ରୀକୃଷ୍ଣ ତାଙ୍କ ମାମୁଁ ଘରେ ପାଳିଥିଲେ । ଆଉ ଆମେ ତାଙ୍କ ପଦାଙ୍କ ଅନୁସରଣ କରିଥାଉ ।

ଶୁଶାନ୍ତ ବାପଘର ପାଇଁ ରିତୁ ଆସିଛୁ । ଶିପ୍ରା ବି ଆସିଛୁ । ବସନ୍ତ, ଶୁଶାନ୍ତ, ତା ବାପା, ରିତୁ ସମସ୍ତେ କାମରେ ଲାଗିଛନ୍ତି । ଶିପ୍ରା କରି ପାରୁନି ଆଗ୍ରହ ଥିଲେ ବି । ରିତୁ କରୁଛି, ହସି ହସି ସବୁ କରୁଛି—ତା'ର ସାନ ଯା ଆସିବ—ସାନ ଭଉଣୀ ଆସିବ । ତା'ର ମନ ଆନନ୍ଦରେ ଫାଟୁଛି । ବେଳେବେଳେ ଶୁଶାନ୍ତକୁ ରିତୁ ତା'ର ଖାଉଜ

ସୁଲଭ ଗୁଣରେ ଆକଷ୍ଟ କରିଦେଉଛି, "ଏ ସୁଶାନ୍ତ, ତୁମେ ଆଉ ଏପରି ହେଁ ହେଁ, ଫେଁ ଫେଁ ହେବନି, ବୁଝିଲ । ସେତେବେଳେ ସେ ନୂଆ ଝିଅ ବୋହୂଟି କ'ଣ ଭାବିବ କହିଲ ? ଟାଇମ୍‌ରେ ଖାଇବ—ତାକୁ ହଇରାଣ କରିବନି । ନହେଲେ ତୁମକୁ ଜ୍ୱର୍ ମିସ୍ କରି ବାପ ଘରେ ବସିବ, ଆଉ ତୁମେ ଉପରକୁ ଅନାଇଥିବ, ବୁଝିଲ ?"

ପ୍ରୀତିଭରା କଥା---ପ୍ରୀତିଭରା ଭାଉଜବୋହୂ ପାଖରୁ ଖୁସି ସୁଶାନ୍ତ ବିଦାୟ ନେଇ ଯାଏ । ଭାଉଜ ସେ ଆଦରର, ଶ୍ରଦ୍ଧାର ଭାଉଜ । ସେ ଘରର ବଡ଼ ବୋହୂ । କେତେ କାଳରୁ ପୂର୍ବପୁରୁଷମାନେ ଗୁହାଁ ବସିଛନ୍ତି ତା ହାତର ପରଶା ଖାଇବାକୁ— ସେ ହୁଏତ ନିଜେ ଜାଣେନା । ପିଲାଦିନର ସାଥି ହୋଇ ଖେଳ, ଅଝଟ, ଘରୁ ପୁରି ରହିଥିଲା ଏଇ ଘରେ—ବସନ୍ତ ଭାଇ ସାଥିରେ । ସେ ଦିନ ବିତିଯାଇଛି । ସେ ହସ ଖୁସି ଭିତରେ ହଜି ଯାଉଥିବା ବସନ୍ତ ଭାଇ ଏକ ଅଜଣାକୁ ଖୋଜେ ହସ ଉପବନ ଭିତରେ । ଆହା, ସତେ ଯେପରି ସ୍ୱର୍ଗର ନନ୍ଦନକାନନରେ ହସ ଉପବନରେ ଗୋଟିଏ ଦୁଷ୍ଟ କୀଟ ପଶି ତା'ର ହସ, ସୌରଭ ଛଡ଼ାଇ ନେଉଛି । କାଉଁରୀର ଅଜଣା ସ୍ପର୍ଶରେ ସତେ ଯେପରି ଉଭେଇ ଯାଉଛି ଧିରେ ଧିରେ ।

ଆଉ ଶ୍ରେଷ୍ଠ ନଣନ୍ଦ ସିପ୍ରା—ସେ ଯେ ମା ହେବାକୁ ଯାଉଛି ଏ କଥା ସମସ୍ତେ ଜାଣନ୍ତି । କିନ୍ତୁ ରିତୁ ଜାଣିବା ଭିତରେ ତଫାତ୍ । ରିତୁ ହସି, ହସି ଗଡ଼ିଗଲେ ମଧ୍ୟ ମନ ଭିତରେ କପରି ଏକ ବେଦନା ଜର୍ଜରିତ ଅହଂ ଈର୍ଷାର ସ୍ଥାନ ଆସି ଯାଉଛି । ତା'ର କାରଣ ନିଜର ନାହିଁ । ନିଜର ନଥିଲେ ଅନ୍ୟକୁ ଦେଖି ସହି ନ ପାରିବାର ଈର୍ଷା— ଅହଂକାରର ଘନୀଭୂତ ବେଦନା ।

କିନ୍ତୁ ସେ ଅହଂକାର୍ ତ ନିଜର—ନିଜ କଲା କର୍ମର କୁହ ବା ପିଲା ପଣିଆ ଚଗଲା ପଣର କୁହ । ଏକା ଭୋଗିବାକୁ ତ ପଡ଼ିବ, ଫେର ଈର୍ଷା ଅହଙ୍କାର କାହିଁକି ? କାହା ଉପରେ ? ମଣିଷ ଯଦି ନିଜକୁ ସଂଯତ କରନ୍ତା, ନିଜକୁ ଆଉ ନିଜ ମନକୁ ଅଧିନରେ ରଖି ପାରନ୍ତା, ତେବେ ହୁଅନ୍ତା—କିନ୍ତୁ ଏ ତ ଗୋଟାଏ ବନ୍ୟାର ସିମା ପ୍ରବାହ—ଯେଉଁଟାକି ହିସାବ କିତାବ ଭିତରେ ରଖି ହୁଏନାହିଁ ।

ବସନ୍ତ ଯେତେବେଳେ ଅଫିସ ଚାଲିଯାଇ ଥାନ୍ତି, ରିତୁ କ'ଣ କରିବ ? କ'ଣ ଦେଖିବ ତରେ ? ନିଜର ମନର ଭୂତ ପାଖରେ ନିଜେ ଡ଼ରେ । ଅସରନ୍ତି ଚିନ୍ତାର

ଡେଉଁରେ ଏକୁଟିଆ ଘରଟା । ନିର୍ଜନ ବନରେ କୋଠଘର ଆକାର ମନ ଭିତରେ ଦେଖାଦେଲେ । ପଡ଼ିଶା ଘରର କୁନିପୁଅ କାନ୍ଦଣାରେ ମନର ଭ୍ରାନ୍ତି ଆହୁରି ଦ୍ୱିଗୁଣିତ ହୁଏ । ହଜାଇ ଆସିଥିବା ଦିନଗୁଡ଼ିକୁ ଖୋଜନ୍ତି । ମନ କହେ—"ତୋ ଘରେ ବି ଏପରି କାନ୍ଦଣାର ଲହରୀ ଦିନେ ଖେଳିଥାଏ । ଅଝଟ ଶିଶୁର ମୁଖରୁ ହୋଇ ଉଠିଥାନ୍ତା—କିନ୍ତୁ ତୁ କରିଛୁ କ'ଣ ? ନିଜ ବିବେକକୁ ପଚାର—ଆଉ ମୁଣ୍ଡରେ ହାତ ବାଡ଼େଇ କାନ୍ଦୁଥା··· କାନ୍ଦୁଥା··· ।"

ଯଦି ଡାକ୍ତର ଦେଖିଥାନ୍ତା ପାଟି କରିଥାନ୍ତା—କହିଥାନ୍ତା "ତୁମକୁ ଏ ବଟିକା ଖାଇବାକୁ କିଏ ପରାମର୍ଶ ଦେଲା ? ନିଜ ମନକୁ ନିଜେ କିଣିକି ଖାଉଛ—ଯାହା ଦ୍ୱାରା ପିଲା ଜନ୍ମ କରିବାର କ୍ଷମତା ତୁମେ ହରାଇ ବସିଛ । ତୁମେ ମା, ନା ଆଉ କ'ଣ ? ତୁମେ 'ମା' ନ ହୋଇପାର, ତୁମର ଇଚ୍ଛା ନ ଥାଇପାରେ, କିନ୍ତୁ ତାଙ୍କ ବାପାଙ୍କର ଯେ ଦରକାର । ଯେତେ ହେଲେ ବି ବସନ୍ତ ପୁରୁଷ—ନିଜର ଅଧିକାର ଅଛି, ଇଚ୍ଛା ଅଛି । ତୁମେ ସ୍ତ୍ରୀ ହୋଇ କ'ଣ ସ୍ୱାମୀକୁ ସୁଖ ଦେବାକୁ ଚାହଁନା ? ସ୍ତ୍ରୀ ଦ୍ୱାରା କ'ଣ ହେବ ଜାଣିଛ ? ତୁମେ ସ୍ତ୍ରୀ ବୁଝିପାରୁନ । ତରୁ ତା'ର ଜିଜ୍ଞାସା ଚକ୍ଷୁରେ ବିସ୍ଫୋରିତ ନେତ୍ରରେ ଚାହିଁ ରହେ । ଆଉ ଡାକ୍ତର କହି ଚାଲିଥାନ୍ତି "ତୁମେ ସେ ଭବିଷ୍ୟତ ପରିଣତି କ'ଣ ଚିନ୍ତା କରିପାରୁନ ? ପିଲା କାହାକୁ ଅଡ଼ୁଆ ? ତା ଅଜା, ଆଈ, ନାଁ ତା ବାପାଙ୍କୁ ? କାହାକୁ ଦରକାର ନାହିଁ ପିଲା ? ନା ସଂସାରକୁ ଦରକାର ନାହିଁ ?" ତରୁ ଡରି ଯା'ନ୍ତି—ଉପାୟ ଖୋଜି ବୁଲନ୍ତି । ମଝିରେ ପ୍ରତିବନ୍ଧକ ସୃଷ୍ଟି କରି ବସନ୍ତ କହୁଥାନ୍ତି "ମାଇଁ ବେଉଟି କୁଇନ୍ ଇଜ୍ ମାଇନ୍ ନଥିଙ୍ଗ ମୋର । ମାଇଁ କୁଇନ୍ ବିଉଟି ଇଜ୍ ଏଭ୍ରିଥିଙ୍ଗ । ହାଃ, ହାଃ, ହାଃ ହାଃ, ଆଇ ଆମ୍ ଦି ମୋଷ୍ଟ କ୍ଲେଭର ମ୍ୟାନ୍ ।" ଅଟ୍ଟ ଶବ୍ଦରେ ଫୁଲି, ଫୁଲି ଚାହାନ୍ତି ତରୁକୁ । ଆଉ ସେଇ ରୂପ ସାଗର ଭିତରେ ବୁଡ଼ି ଯା'ନ୍ତି । ଆଉ ସେଇ ରୂପ ଅକ୍ଷତ ଅବସ୍ଥାରେ ସଦା ନାଚୁଥାନ୍ତା—ବସନ୍ତଙ୍କ ଆଖିରେ—କୌଣସି ଏକ ସିନେମା ପର୍ଦ୍ଦାରେ ଛବି ନାଚିଲାପରି । ବସନ୍ତ ତାକୁ ମଦିରାର ଗ୍ଲାସ ଭିତରେ ନଚାଇ ନଚାଇ ପିଉଥାନ୍ତେ । ତାଙ୍କର ପ୍ରାଣ ପ୍ରିୟା ମାନସୀର ଅକ୍ଷତ ଯୌବନର ମଦିରା ପାନକରି ଚାଲିଥାନ୍ତେ—ଆଉ ଭୁଲି ଯାଇଥାନ୍ତେ ସଂସାର କ'ଣ ? ପିଲା କ'ଣ ? ଘର କ'ଣ ?

କିନ୍ତୁ କାହିଁ ସେ ସ୍ୱପ୍ନ ? ଅଳେଙ୍ଗା ଅଝୋଳାରେ ଛିନ୍ନ କମ୍ପିଦର୍ଭୀ । ବହୁ ଦୂରରେ ଗୋଟିଏ ଅନାଗତ ଭୂଇଁକୁ—ଆଉ ଯିବ ପାରେ ନାହିଁ ଋତୁ , ଚିନ୍ତା ଗଣ୍ଡୋଗୋଳ ହୋଇଯାଏ । ଏ କଥା କ'ଣ ଭୁଲିଗଲ ? —ଆଉ ବସନ୍ତକୁ ତୁମେ ବାନ୍ଧି ପାରିବ ନାହିଁ ! ପାରିବ ନାହିଁ !

ପାର୍ଟି ଶୁଭୁଛି କାହାର—ବାହାରେ, ଦାଣ୍ଡରେ । ଫିସ୍ତା ପଡ଼ିଗଲା—ହସପିଟାଲ—ଡାକ୍ତର—ଗାଡ଼ି ଇତ୍ୟାଦି ।

ବସନ୍ତ ବାପଘର ଯାଇ ନିଜ ଗୃହର ଯାଗାକୁ ଆସିବାର ପ୍ରାୟ ଛ'ମାସ ହୋଇ ଗଲାଣି । ଋତୁର ଏବେ ମନ କହୁଛି, ଘରେ ରହନ୍ତା । ଯେଉଁଠି ଶାଶୁ, ଶଶୁର, ଯା, ନଣନ୍ଦ, ଦିଅରଙ୍କର ଏକାଠି ତ ମେଳ । ସେଇଠି ତାପର ମଧୁ ଘରେ । ସେତେ ଅସୁବିଧା କଷଣ ଭିତରେ, ତାପର ଏକ ଅଜଣା ଉନ୍ମାଦ ପୁଲକ ଯଗାଏ । ମନ ରହିଯାଏ ରହିବା ପାଇଁ । କିନ୍ତୁ ରହିବାର ଉପାଦାନ ତ ନିଜେ ହରାଇଛି କି ମନକୁ ହଜାଇଛି ଜାଣେନା । କିନ୍ତୁ ପରଦେଶର କେତୋଟି ଅଦ୍ଭୁତ ଦର୍ଶନ, ଆଉ ପ୍ରଂଶସା ଭିତରେ ତାପର ଯେପରି ସେ ଦୂରକୁ ଛୁଟିକି ଆସିଛି ।

ଋତୁ କ'ଣ ଚାହିଁଥିଲା ଲୋକମାନେ ତାକୁ ତାରିଫ୍ କରନ୍ତୁ ! ଲୋକେ ତ ନିଜ ଇଚ୍ଛା, ନିଜ ମୁହଁରେ କହୁଥିଲେ: "ବୋହୂଟି ବଡ଼ ସୁନ୍ଦର, ବସନ୍ତର ପୂର୍ଣ୍ଣ ସମକକ୍ଷ । ରୂପରେ ଯେପରି, ଗୁଣରେ ବି ସେପରି । କେଉଁଥିରେ ଟିକିଏ ହେଲେ ଖୁଣିବାକୁ କିଛି ନାହିଁ । କେତେ ବଡ଼ ଅଫିସରଙ୍କ ଝିଅ—ଫେର୍ ଏତେ ପାଠ ପଢ଼ିଛି ଯେ, ଗୋଟାଏ ପୁଅ ସାଙ୍ଗେ ସରି ହେବ । ନିଜ ହାତରେ ରୋଷେଇବାସ କରେ । ଗାଁ ଜାଗାରେ ଫେର ଚଳଣି—ଚଳୁଛି, ଟିକେ ବାରଣ ନାହିଁ ।" ହେଲେ, ଏ ଗାଁ ମାଟି-ମମତା କେତେ ଟାଣୁଛି । "ଦେଖ ହୋ, ଗାଁଟା ଯାକର ଯେତେ ପିଲା ସବୁ ଘଉଜଳ, ଘଉଜଳ ହୋଇ ପାଖରେ"—କିଏ କହୁଛି, "ସାର୍ଟ ବଟମଟା ଲଗାଇ ଦିଅ, କିଏ କହୁଛି ପଢ଼ାଇଦିଅ, କିଏ କହୁଛି ଦରଖାସ୍ତ ଲେଖି ଦିଅ । କେତେ ସହୁଛି ଝିଅଟେ । ଝିଅ ନୁହେଁ ତ—ଲକ୍ଷ୍ମୀ—ସାକ୍ଷାତ ଲକ୍ଷ୍ମୀ ।" ହେଲେ, ଏ ଗାଁର ଗୋଟାଏ ଝିଅ କିଏ ଅଛି ସମସର ହେବାକୁ ? ଏ ଗାଁର କେଉଁଟା ବୋହୂ ଅଛନ୍ତି

ଏପରି ? ପାଠ ପଢ଼ା ପିଲା କହନ୍ତି—"ହଁ ସେ ସହରକୁ ଯାହାଁକି ଆମେ ମଲାମୁଣ୍ଡିଆ ବୋଲି ଘୃଣା କରିବେ, ସେ ତ ଆଦର କରନ୍ତି । ଏ ସହର ବଡ଼ ଉଚ୍ଚ ମିନାରର, ଉଚ୍ଚକୋଟିର । ଦେଖନ୍ତୁ କିପରି ମାର୍ଜିତ ରୁଚି ! ବଡ଼ ଖାନଦାନୀ ବୁନିଆଦି ମନବୃତ୍ତିର ପରିଚାୟକ ଏହା ।"

ରିତୁ ଭାବୁଥିଲେ, କେତେ ଖୁସାମତ କରୁଛନ୍ତି ଏ ଗାଁର ଲୋକେ—କେତେ ଚେଷ୍ଟା କରୁଛନ୍ତି । ପ୍ରକୃତ ତାଙ୍କର ଟାଉନରେ ରହିବା କଥା । ଏଠାରେ ଏ ଲୋକଙ୍କ ସାଥିରେ ମନ ମିଳେନା । ରିତୁ ଶୁଣୁଥିଲେ, ମହାନଗରୀର ସଭ୍ୟତା ଯାହା ହେଉନା କାହିଁକି, ତାଙ୍କ ପାଇଁ ଶୋଭନୀୟ । ଗାଡ଼ି, ମଟର, କଲେଜ, ସ୍କୁଲ, ଡାକ୍ତରଖାନା, ବଡ଼ ବଡ଼ ମନୋହର ଦୋକାନ, ସିନେମାଲୟ, ଖାଇବାକୁ ଜାମ୍, ଜେଲି, ଅଣ୍ଡା, ବ୍ରେଡ, ଫଳମୂଳ, ସୌଖିନ ଜିନିଷ—କେତେ କ'ଣ ସେଠାରେ ନାହିଁ । ସବୁ ସୁବିଧା । କୋଠା ଘର, ଫୁଲ ବଗିଚା, ଦାସ ଦାସୀ । ପୁଣି ନିଜର ଏକାନ୍ତ ପ୍ରଭୁତ୍ୱ ବିସ୍ତାର—ଫେର ସୌଖିନ ତ କରନ୍ତି ତାଙ୍କ ପରି କୌଣସି ବଡ଼ ଅଫିସରଙ୍କ କନ୍ୟା । ଆଉ ଏହି ଧନୀ ଘରର କନ୍ୟାଙ୍କ ପାଇଁ ଯେପରି ଟାଉନଟା ଗଢ଼ା—ତାଙ୍କରି ପାଇଁ । ସବୁଗୁଡ଼ିକ ପ୍ରକୃତ୍ୟା ତାଙ୍କରି ଭଳି ବଡ଼ ଘରର ଝିଅଙ୍କ ପାଇଁ, ବଡ଼ଲୋକଙ୍କ ପାଇଁ··· ।

ଏଇଥିରୁ ବାଦ୍ ଯାଇନଥିଲେ ରିତୁ ପାଟଣାଣୀ । ସେ ବି ମିଶି ଯାଇଥିଲେ ଧନୀ ଲୋକଙ୍କ ଅଲିଅଳି କନ୍ୟାମାନଙ୍କ ସହ ।

ଏକାନ୍ତ ମନରେ ରିତୁ ଚାହିଁଥିଲେ ମହାନଗରୀର ଆଲୋକ କଣିକାକୁ—ଯେତେ ଶୀଘ୍ର ଫେରି ଯାଇବାକୁ । ପାଇଥିଲେ ମଧ୍ୟ । ଖୁବ୍ ଆଦରରେ ଉପଭୋଗ କରିଥିଲେ । କେତ୍କୁଣି ଇଲିସି ପାଇଲା ପରି ସେ ପିଇ ଯାଇଥିଲେ··· ।

ପୂର୍ବାଗ୍ରୀ ମହନାଟା ପାଟି କରି ଦୌଡ଼େ, "ମା' ମା' ଗାଁରୁ କିଏ ଗୁରୁ ଜଣେ ଆସିଛନ୍ତି । ତାଙ୍କର କିଏ ଏଠାରେ ଚାକିରୀ କରନ୍ତି । ଆସିଥିଲେ ଆମ ବାବୁଙ୍କ ସାଥିରେ ଟିକେ ଦେଖା କରି ଯିବେ ।" ରିତୁ କହିଉଠନ୍ତି, "ଆରେ ଦେଖା କରି ଯିବେ, ନା ରହିବେ ? ସତରେ ରହିଲେ ଯାହା ତ ଖାଇବେ ତା ଉପରକୁ ବୋଝେ ଲେଖାଏଁ

ତେଲ ମୁଣ୍ଡରେ ବୋଲି ଆସିଥିବେ । ଶୋଇବେ ଶେଯରେ—ଏତେ ସୂଦର, ତକିଆ କେଉଁଠୁ ଆଣିବ ? ହଁ, କହିଦେ, ବାବୁ ନାହାନ୍ତି ।"

ଏ ଲୋକଗୁଡ଼ାକ ଟିକିଏ ସୁବିଧା ପାଇଲେ ରହିଯିବେ । ଆଙ୍ଗୁଠି ପ୍ରବେଶରୁ ବାହୁ ପ୍ରବେଶ ପରି କରିବେ । ପୁଅ ନାତିଙ୍କୁ ଚାକିରୀ କରିଦିଅ—ଟଙ୍କା ଦିଅ ଇତ୍ୟାଦି । ଘର ପାଖ ଜଣେ ବି ଏକାଠି ଆସନ୍ତି । ବିଚରା ମହନଟା କେତେ ଖଟିବ । ଖଟି ଖଟି ଥକି ଯାଏ । ମହନାର ତ ଆଡ଼ାଚଉଡ଼ା କିଛି କମ୍ ନୁହେଁ । ସେ ଯେତେହେଲେ ତ ବଡ଼ ଅଫିସରଙ୍କ ପୁଝାରୀ—ଟାଉନ୍ ବାବୁ । ସେ ବି ଫୁର୍ତ୍ତି କରିବାକୁ ଚାହେଁ—ସିନେମା ଦେଖିବାକୁ ଚାହେଁ—ଭଲ ଖାଇ, ଭଲ ପିନ୍ଧିବାକୁ ଚାହେଁ, ମନୋରଞ୍ଜନ କରେ, କିନ୍ତୁ ବାବୁ ମାଙ୍କ ଆଗରେ ନୁହେଁ । ନହେଲେ ଚାକିରୀ ଯେ ଗୋଲ ହୋଇ ଯିବାର ଆଶଙ୍କା ଅଛି । ଗାଁ ଲୋକଙ୍କୁ କହିଦେଲେ ସେମାନେ ତ ଚାଲିଯିବେ, କିନ୍ତୁ ଏ ମହନା ଗଲେ ଆଉ ଯେ ମହନା ନ ମିଳନ୍ତି—ଚିତ୍ରୁଙ୍କର ଖାଲି ଡର । କାଲେ କେଉଁଠି କାମ ପଡ଼ିଲେ ମହନା ପଳାଇବ !!

ଚିତ୍ରୁ କହିଉଠନ୍ତି, "ଆରେ ମହନା କହିଦେ, ବାବୁ ନାହାନ୍ତି । ବାବୁଆଣୀଙ୍କ ଦେହ ଭଲ ନାହିଁ ।" ଦାନା ଖିଆ ଚାକର ମହନା, ଯାଇ ସେଇଆ କୁହେ—ସେ ବାବୁଙ୍କର ଯେଉଁ ଲେଖାପୋଖା, ଯାହା ହୁଅନ୍ତୁ ନା କାହିଁକି । ମହନା ଯେ କାମରୁ ଖାଦ୍ୟ ପାଉଛି —ତା ପାଇଁ ସେଇ ଯଥେଷ୍ଟ । ମହନା ଚାହିଁଲା—ସେମାନେ ଚାଲିଯାଉଛନ୍ତି ଗେଟ୍ ଖୋଲି । ଯିଏ ଯେମିତି ଆସନ୍ତି ଚାଲିଯାନ୍ତି ଠିକ୍ ଏହିପରି । ଆଉ ହଁ, ଯିଏ ଜଣେ ଅଧେ ମନକୁ ବଳେ ପଶି ଆସନ୍ତି ଭିତରକୁ ତାଙ୍କ ଦୌରାତ୍ମ୍ୟ କହିଲେ ନ ସରେ । ସେ ଗପିବାକୁ ଆସିଛନ୍ତି ଦଶ ଟଙ୍କା ରିକ୍ସା ଭଡ଼ା କରି—ଖୁବ୍ ଆପଣାର ଲୋକ ଭଳି । ଗାଁ ଗୋଟାକର କଥା ଗପିବେ, ନ ପଚାରିଲେ ମଧ୍ୟ ଶୁଣାଇବେ—କାଳେ ବସନ୍ତ ଭୁଲି ଯାଇଛି ମନେ ପକାଇ ଦେବେ । ବସନ୍ତର ସମୟ ନ ଥିଲେ ମଧ୍ୟ ଶୁଣିବାକୁ ବାଧ୍ୟ । କଥା ମଝିରୁ କା ଉଠିଯାଉଛି କେତେବେ ? ଯେତେ ହେଲେ ବି ଗାଁ ଲୋକ କି, ନା । ବସନ୍ତ ତ ବର୍ତ୍ତମାନ ଉପର ପାହ୍ୟାକୁ ଉଠି ଉଠି, ବହୁତ ଉପରକୁ ଉଠି ଗଲାଣି । ଖାଇବାକୁ ସମସ୍ତ ନାହିଁ, ଶୋଇବାକୁ ସମସ୍ତ ନାହିଁ, ବୁଲିବାକୁ ବି ସମୟ ନାହିଁ । ଖାଲି କାମ, କାମ । ଖାଲି କାମରେ ଅଧିଶାସ୍ତ

ମନବୃଦରେ, ମନଟା ବ ଜପର ଚେହେରା ସାଥିରେ ଟୁଷ ହୋଇ ଗଲାଣି । ମୁହଁ କପର ଶିଶୁବାନ୍ତ ଗମ୍ଭୀର ହୋଇ ଉଠୁଛି । ଆଗ ଅପେକ୍ଷା ଏବେ ଚନ୍ତା ଆଉ କାମର କଲ୍ପଣାରେ । ମାନସିକ ଉପଶମର ଔଷଧ ଖୋଜା ଚ୍ଲୁଛି ଏଣାଗେଜ୍ ଛଳରେ—ଅଜସ୍ର, ଅତ୍ୟଧିକ ।

ଅଧିକ ବ୍ୟସ୍ତ ହୋଇ ଉଠିଛନ୍ତି ଚିତ୍ରୁ—ଏ ପରିବର୍ତ୍ତନରେ । ହଜମୁହିଁ ମନଭାବ ଭିତରେ ଯେପରି ଉବୁଟୁବୁ ହେଉଛନ୍ତି—ଜଳୁଛନ୍ତି ।

କୃହୁଳୁଛନ୍ତି—କହୁ ନାହାନ୍ତି । ଅତୀତର ମୃଦୁବହୁଳ ସୁନ୍ଦର ମୁହୂର୍ତ୍ତିଗୁଡ଼ିକୁ ସ୍ମରଣ କଣ—ସେଗୁଡ଼ିକ କେଉଁଠି ଯେପରି ହଜି ଯାଉଛି, ହଜି ଯାଇଛି । କେଉଁଠି ଖୋଜି ପାଇବେ ? —ଅକ୍ଲାନ୍ତ ପରିଶ୍ରମ, ବ୍ୟାକୁଳ ହୃଦୟ ନେଇ ଖୋଜୁଛନ୍ତି ।

ନିଜ ଅଜଣାତରେ ଯେପରି ଅଜଣା ଭୂତଟା ତାଙ୍କୁ ଗୋଡ଼େଇ ଗୋଡ଼େଇ ଗୁଲିଛି, ଡରେଇ ଡରେଇ ଗୁଲିଛି । ତାଠୁ ଖସି ଯାଇବାକୁ, ଲୁଚିବାର ଉଦ୍ୟମ କରିବାକୁ ସେ ଗୁହାନ୍ତି । ହେଲେ କେଉଁଥିରେ ମନ ଲଗେନି । ଫୁଲରେ ? ଫୁଲ ବଗିଚାରେ ? ପଢ଼ାରେ ? କିନ୍ତୁ ତାଠୁ ଖସି ମିଳନାହିଁ—ତାଙ୍କ ପଛରେ ଛାଇଟା ପରି ଧାଉଁଛି । ଧାଉଁଛି ମଧ୍ୟ ।

କପରି ଯେପରି ଜ୍ୟୋତିର୍ମୟ ତାରାର ପତନ । ତା'ର ସେ ତେଜସ୍ୱିତା ଆଉ ନାହିଁ ହୋଇ ଅପସରି ଯାଉଛି । ଚିତ୍ରୁଙ୍କର ଶତ ଚେଷ୍ଟା ସତ୍ତ୍ୱେ ବି ତା'ର ବ୍ୟତିକ୍ରମ ହେଉ ନାହିଁ । ନିଷ୍ଫଳ ମନୋରଥର ତୀବ୍ର ଜ୍ୱାଳାରେ ସେ ମ୍ରିୟମାଣ ହେଉଛନ୍ତି । ଯେପରି ଅବନତ ଖୋଲା ଆକାଶରେ କଳା ବାଦଲ ଘୁଞ୍ଚିଯାଏ—ମୁଖଶ୍ରୀରେ ଚନ୍ଦ୍ରର ଢେଉ ଖେଳୁଛି—ଢେଉ ଖେଳି ଖେଳି ହଜି ଯାଉଛି ଗୋଟିଏ କବିତାର ଛନ୍ଦରେ । ମେଘ ଦୂତର ନେବ ପରି ? କାଳିଦାସଙ୍କ କବିତାର ଗୁଞ୍ଜନ, କାମିନୀର ଶୃଙ୍ଗାର ଫିକା ପଡ଼ି ଆସୁଛି । ଆହା, ସମୟର କରାଳ କାଳ ମୁଖରେ ରଙ୍ଗ ଫିକା ପଡ଼ିଯାଉଛି । ମନର ଉତ୍ସାହ ମରି ମରି ଯାଉଛି—ପକ୍ଷୀ ବଣିକର ଏକ ମନଛୁଆଁ ସ୍ୱପ୍ନ ପରି ଉଡ଼ି ଯାଉଛି । ଆହା, ମନର ସବୁଜ, ସୁରଭି ଲିଭି ଆସୁଛି । ମନ ବିଷାଦରେ ଭରି ଉଠୁଛି । କାମରେ ମନ ଲାଗୁନି, ଖାଇବାରେ ମନ ଲାଗୁନି, ବିଳାସବ୍ୟସନରେ ମନ

ବାଲିଗୁନ । ଏଇ ସହରର ଜନଜମନ ଭିଡ଼ରେ ନଜର ଅସ୍ଥିର୍ ହେପରି ଲେପି ଯାଉଛନ୍ତି—ହଜି ଯାଉଛନ୍ତି । କ୍ଷତ ପକ୍ଷୀର ଆହତ ସ୍ୱର ଆଉ କାହାକୁ ଶୁଭୁନାହିଁ—ଶୁଭୁନାହିଁ ।

ତଥାପି ତ ବଞ୍ଚିବାକୁ ହେବ—ଯେତେ ଯାହା ହେଲେ ବି । କିନ୍ତୁ ବସନ୍ତଙ୍କର ଅନୁପସ୍ଥିତି ଯେ ସବୁଠୁଁ ଅସହ୍ୟ ହେଉଛି । ଫେର ଶୁଖିଲା ଓଠରେ ହସ ଫୁଟାଉଛୁ, ଭଙ୍ଗା ମନକୁ ଯୋଡୁଛୁ, ସବୁ ଭୁଲି ନିଜକୁ ନୂଆ ଛାଞ୍ଚରେ ବଦଳାଇ ନେଉଛ । କିନ୍ତୁ ଯୋଡି ହେଉଛି ବା କେତେବେଳେ ? ବେଳେବେଳେ ଉପରର ଭୂତ ନିଜ ଭିତରେ ତା'ର ସ୍ଥିତି ବିସ୍ତାର କରୁଛି ।

ହଁ ସୌମେନ୍ଦ୍ର ଆସୁଛନ୍ତି ଘରକୁ, ବସନ୍ତର ଅନ୍ତରଙ୍ଗ ସାଙ୍ଗ ଭଲ ମନ୍ଦ ବୁଝିବାକୁ । ଧରନ୍ତ ଉପଶମ କରିବାକୁ ଆସନ୍ତି—ବସନ୍ତି—କଥା ଗପନ୍ତି । ଋତୁ ବା ବାଧା ଦେବାକୁ କିଏ ? ସେ ତ ବସନ୍ତଙ୍କର ଅନ୍ତରଙ୍ଗ ସାଙ୍ଗ । ବସନ୍ତ ସବୁବେଳେ ତାଗିଦ୍ କରନ୍ତି, "ଆରେ, ସୌମେନ୍ଦ୍ର ଆସିଛନ୍ତି ଯେ, ଋତୁ ଚା' କର, ଜଳଖିଆ କର । ଆଜି ଆମର ଏଠାରେ ଖାଇବ", ଇତ୍ୟାଦି ଇତ୍ୟାଦି । ଖାଲି ଯେ ଖା ପିଆ ତା ନୁହେଁ, ଏକାଠି ସିନେମା ଯିବା, ପିକ୍‌ନିକରେ ଭାଗ ନେବା, ହସ, ଥଟ୍ଟା କରିବା ଇତ୍ୟାଦିରେ ମଧ୍ୟ ସେ ସହଯୋଗ କରନ୍ତି ।

ଆଉ ବସନ୍ତ ପ୍ରତ୍ୟେକ ଦିନ ଘଡ଼ିରେ, ଘରକୁ ଡେରିରେ ଫେରନ୍ତି । ଋତୁ ଆପତ୍ତି କଲେ କୁହନ୍ତି, "ଖେଳୁ ଥିଲି ।" ସିଗାରେଟ ବାରଣ କଲେ କୁହନ୍ତି, "ଓ ହୋ, ସିଗାରେଟଟା ଉପରେ ମୁଁ ଦେଖୁଛି ତୁମର ବହୁତ ରାଗ । ସିଗାରେଟ ହେଲା, ମସ୍ତିଷ୍କ ଠିକ୍ କରିବାର ଔଷଧ । ତାକୁ ଛାଡ଼ି ଆଉ ଯାହା କୁହ ।" ଋତୁ ବା ଆଉ କ'ଣ କହିପାରିବ ? ଆଉ କ'ଣ କହିବାର ଅଛି—ନା, ଥାଉ ଆଜି ନୁହେଁ !

ଆଗର ବସନ୍ତ—ଆଉ ଏବେ ଉପରେ ତାଙ୍କଠି ବ୍ୟତିକ୍ରମ ଦେଖେ ଋତୁ । ଖାଇବାକୁ ଦେଲେ ଯେପରି ତୃପ୍ତି ନଥାଏ—କଥା କହିବାକୁ ଯେପରି ଇଚ୍ଛା ନଥାଏ—ଅନ୍ୟ ମନସ୍କ ରହି ସଦାବେଳେ କ'ଣ ଚିନ୍ତା କଲାପରି ଢଙ୍ଗ । କ'ଣ ଏତେ ଭାବନା ଆଇପାରେ ? ହୁଏତ ଦୁର୍ଗମ୍ୟ ଚିନ୍ତା—ଧୂଳି ପାଟସାହାଣୀଙ୍କ କ୍ରୋଡ ବାହାରେ !

ବସନ୍ତଙ୍କ ମନରେ ଘୁଣ ଧରିଛି । ରିତୁଙ୍କୁ ବସନ୍ତ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି— କିଛି କହୁ ନାହାନ୍ତି । ଏବେ ବେଶି ବାହାରେ ରହିବାକୁ ପସନ୍ଦ କରୁଛନ୍ତି । ରିତୁର କାରଣ ମାନୁନାହାନ୍ତି, ଏବେ ଡ୍ରିଙ୍କ୍ ମଧ୍ୟ କରୁଛନ୍ତି—ରେଷ୍ଟୋରାଁ କ୍ଲବରେ ରାତି ରାତି ବିତାଉଛନ୍ତି । ରିତୁଙ୍କୁ ଯେପରି ତାଙ୍କ ମନ ଭିତରୁ କାଟି, ପୋଛିପାଛି ଦେବାକୁ ବଡ଼ ପରିକର ପରି ମନେ ହେଉଛି । କିନ୍ତୁ ଡାଇଭର୍ସ ତ କରି ପାରନ୍ତେ—କାହିଁକି କରି ପାରୁ ନାହାନ୍ତି ?

ମନଟରେ ଗୋଟିଏ ବିରାଟ ପ୍ରଶ୍ନବାଚକ ଚିହ୍ନ ଭିତରେ ନଜର ଛିଡ଼ି ଲିଭି ଯାଉଛି । ବିଭାଘର ପରେ କୋଡ଼ିଏଟି ବସନ୍ତ ଅତିକ୍ରମ କରି ଗଲାଣି । ହସ ଖୁସି ଭିତରେ, ଏବେ ପରିବର୍ତ୍ତନର, ଉଚ୍ଛୃଙ୍ଖଳ ଜୀବନ ଆରମ୍ଭ କରୁଛି, ପ୍ରତିକ୍ଷଣରେ । ବସନ୍ତଙ୍କର କୌଣସି ପରିବର୍ତ୍ତନ ଲକ୍ଷ ହେଉନାହିଁ । ବସନ୍ତଙ୍କର ମନ ଆହୁରି ତଳକୁ ଖସି ଯାଉଛି । ସିନେମା ବୁଲିବା, କଥା କହିବା, ଘରର ହାଲଚାଲ ମଧ୍ୟ ବୁଝିବାକୁ ଯେପରି ଇଚ୍ଛୁକ ନୁହନ୍ତି । ବସନ୍ତଙ୍କ ହତାଦର ରିତୁ ମନରେ ଅଗ୍ନି ଜାଳି ଦେଇଛି । ରିତୁ ଭାବୁଛନ୍ତି କୁଆଡ଼େ ଯିବେ—ବାପ ଘରଁ ନା ଶାଶୁଘର ? ତେବେ, ଏଇଠି ରହିବେ ଶୂନ୍ୟ ମନ୍ଦିରରେ ପ୍ରତୀକ୍ଷାର ଦୀପ ଜାଳିବାକୁ—ଶ୍ମଶାନ ଭୂମିରେ ବାସର ଘର ରଚିବାକୁ ।

ଦାଣ୍ଡ ଦୁଆରେ ଆଘାତର ଧ୍ୱନି—କଲିଂ ବେଲ୍ ଥିବାର କିଏ ହୁଏତ ଭୁଲିଯାଇଛି ! ଏତେ ରାତିରେ କିଏ ହୋଇ ପାରେ--? କେତେବେଳୁ ପୂଝାରୀ ରୋଷେଇବାସ କରି ଖାଇକି ଶୋଇଗଲାଣି । ରାତି ବାରଟା ବାଜିଲାଣି, ଟିଭିଟା ବନ୍ଦ ହେଲାଣି—ରିତୁଙ୍କ ଆଖିରେ ନିଦ ନାହିଁ । ବସନ୍ତ ଫେରି ନାହାନ୍ତି । ଡାଇନିଂ ଟେବୁଲରେ ଖାଇବାର ଜିନିଷ ଥଣ୍ଡା ହୋଇଗଲାଣି ।

ରାତି ଜଗା ଚଢ଼େଇ ପହରା ଦେଉଛି ଯେପରି । ସେ ସବୁ ଦେଖୁଛି—ପ୍ରକୃତିର ପ୍ରତ୍ୟେକ ଶୋଭାକୁ ଦେଖୁଛି ନୀରବ ଚକ୍ଷୁରେ । ପିଞ୍ଜରାରେ ଆବଦ୍ଧ ଥାଇ ମଧ୍ୟ ସେ ବୁଝି ପାରୁଛି ଆକାଶରେ ପୂର୍ଣ୍ଣିମୀ ଚନ୍ଦ୍ର ଉଠୁଛି ବୋଲି ତାରା ସଖି ମେଳରେ । ହସି ହସି ରାଜୁତି କରି ଫେର ସକାଳର ଫିକା ରୋଷଣୀରେ ଲିଭିଯାଉଛି । ବଉଳ, ସୁଗନ୍ଧରାଜର ବାସନା କିପରି ପବନରେ ଉଡୁଛି । ତା'ର ସେ ସୌରଭ ବିକାଶ ଯେପରି ଅଯଥା, ଅକାରଣରେ ମଉଳି ପଡୁଛି ।

ହଁ, ତା'ର ମଧୁହାସ, କୁହ କମ୍ପା ମଧୁହାସ କୁହ, ତ ଏକା । ଉଡ଼ିଯାଉଛି ଅବହେଳାରେ, ଜଳି ଯାଉଛି ଗର୍ବ । ଢଳି ପଡ଼ୁଛନ୍ତି ବସନ୍ତ ଋତୁଙ୍କ କୋଳରେ । ପ୍ରେମରେ ପାଗଳ ହୋଇ ନୁହେଁ—ମଦର ନିଶାରେ । ବେଡ଼ରୁମ୍‌କୁ ଋତୁ ବସନ୍ତଙ୍କୁ ଏକ ପ୍ରକାର ଟାଣିଟାଣି ଆଣିଲେ । ଦାଣ୍ଡ ଦୁଆରଟା ଖୋଲା । କାରର ଦରଜାଟାବି ଖୋଲା ପଡ଼ିଛି । ସେ କହି ଉଠିଲେ, "ହେ, ଭଗବାନ ଏ ମାତାଲ ଅବସ୍ଥାରେ ପୁଣି ଗାଡ଼ି ଡ୍ରାଇଭିଙ୍ଗ୍ ? ରାସ୍ତାରେ ଯଦି କିଛି··· ।" ଋତୁଙ୍କ ମୁଣ୍ଡ ଘୂରିଗଲା ।

ପଲଙ୍କ ଉପରେ ନିଶ୍ଚଳ ଅବସ୍ଥାରେ ବସନ୍ତ ଶୋଇଛନ୍ତି । କେଶ ବାସର ଠିକଣା ନାହିଁ—ସାର୍ଟ ବୋତାମ ସବୁ ଖୋଲା ଯାଇଛି । ଗୋଡ଼ରେ ପଟେ ସ୍ୟାଣ୍ଡେଲ ଅଛି, ତାକୁ ଖୋଲି ରଖିଲେ ଋତୁ । ସାର୍ଟଟା ଖୋଲି ଦେଲେ, ମୁଣ୍ଡ ତଳେ ଠିକ୍ କରି ତକିଆଟା ଦେଲେ । କାର ଦରଜା ବନ୍ଦକରି, ଦାଣ୍ଡଦୁଆର ବନ୍ଦକଲେ । ଏତେ କାମ ସାରିବି ତାଙ୍କ ଆଖିରେ ନିଦ ନାହିଁ—ଚାହିଁଲେ ବସନ୍ତଙ୍କୁ । ଏହି ତାଙ୍କର ଜୀବନର ସର୍ବସ୍ୱ—ଅତି ଆପଣାର, ନିଜର ଚିର ବାଞ୍ଛିତ ଧନ । ଅନ୍ତରର କେଉଁଠି ସ୍ମୃତି ବିଜଡ଼ିତ ବ୍ୟଥା, ସ୍ଫୁରି ହେଉଛି—।

ସେ ପାଗଳିନୀ ପ୍ରାୟ ପ୍ରଳାପ କରି ଉଠିଲେ, "ବସନ୍ତ, ତୁମେ କେଉଁଠି ? ବସନ୍ତ, ତୁମେ କେଉଁଠି ? କାହିଁକି ହଜିଗଲ ? ନିଜ ଚଲା ପଥର ଧାରେ ଧାରେ ତୁମେ ଅତି କ୍ଲାନ୍ତହୋଇ କାହିଁକି ଏ କାମ କଲ ? ଏପରି ହେଲ କାହିଁକି ବସନ୍ତ ? ମୋତେ କାହିଁକି ଏପରି ହଇରାଣ କରୁଛ ? ମୁଁ ତୁମର କ'ଣ ଦୋଷ କରିଛି ?" ହତାଶର ଅଗ୍ନି ଯେ ମନକୁ ଦହନ କରୁଛି—କରୁଣା, ଦୁଃଖ, ଗ୍ଳାନି ଭରି ଦେଇଛି—ଆଖିରେ ଅଶ୍ରୁର ଝର ଛୁଟିଛି । ଋତୁ ଛାତିକୁ ପାଲଟି ଯାଉଛି । ଆଖି ଆଗରେ ପୃଥିବୀ ଯେପରି ଘୂରୁଛି—ଖୁବ୍ ଯୋରରେ । ମୁଣ୍ଡ ଘୂରି ଯାଉଛି—କିଛି ପଶୁନି ମୁଣ୍ଡରେ ।

ଋତୁ ଛାତିକୁ ପାଲଟି ଯାଇଛନ୍ତି । ହଜିଲା ଦିନର ସ୍ମୃତି ମାନସ ପଟରେ ଆଘାତ ଦେଉଛି । କିପରି ସାଥି ହୋଇ ବସନ୍ତ ଆଉ ଋତୁ ଖାଆନ୍ତି—ବାଛି ବାଛି ଶାଢ଼ି ପିନ୍ଧାନ୍ତି—ଏଇଟା ଭଲ ଦିଶିବ—ସେ ରଙ୍ଗ ତୁମକୁ ମାନେ ଇତ୍ୟାଦି । ସିନେମା ଯିବାକୁ ବାଧ କରିବା, ଗୋଡ଼େଇ ଗୋଡ଼େଇ ଛୁଟୁଲେଇ ହେବା—ସବୁ ଆଦର ଗୌରବ ଯେପରି ଅବର୍ଜନା ପୂର୍ଣ୍ଣ ଅଳିଆ ଗଦାର ଅନାବଶ୍ୟକ ଜିନିଷ ହୋଇ ଉଠିଛି

ଏମନ୍ତ କି ପରିବର୍ତ୍ତନ ହୋଇପାରେ ? ଋତୁ ବିଶ୍ୱାସ କରି ପାରୁ ନଥିଲେ । କାନରେ ବାଜିଯାଉଛି ସେଇ ଦିନର କଥା—ଆଖି ଆଗରେ ସେଇ ସ୍ନେହ ପ୍ରୀତି ଭରା ଚାହାଣି । ସେ ଦିନର ହକିକ କଥା ସବୁ ମନର ନିର୍ଜନ ଭୂମିରେ ମଥା ପିଟୁଛନ୍ତି । ଅତଏ ସେଦିନ ପରି ସ୍ଥିର କାନ୍ଥି ଭିତରେ ବସି ଋତୁ ଭାଗ୍ୟକୁ ନିନ୍ଦ କାନ୍ଦୁଛନ୍ତି । ସେ କାନ୍ଦ କ'ଣ ଧନ ପାଇଁ ନା, ଭୋଜ ପାଇଁ ? କ'ଣ ପାଇଁ ? ବହୁତ ସାବଧାନ, ବହୁତ ସତର୍କତା ଭିତରେ ଥାଇ ଯେପରି ସବୁ ଓଲଟ ପାଲଟ ହୋଇଥିଲା—ପର୍ଦ୍ଦାର ଆଢ଼ୁଆଳରେ ସିନା ଘରର ଆବାସପତ୍ର ଘୋଡ଼ି ହୋଇଯାଏ—ବାହ୍ୟ ଜଗତରୁ ଅନ୍ତରାଳ ହୋଇଯାଏ । କିନ୍ତୁ ମନରେ ଯେତେବେଳେ ଦ୍ୱନ୍ଦ୍ୱ ଦେଖାଦିଏ, ବେଦନା ବିରହ ପ୍ରାଣରେ ଯେତେବେଳେ ଆଘାତ ପାଏ, ମନକୁ ଗୁଡ଼ି ଶରୀରରେ କ'ଣ କାହୁଁ ବିଶେଷ—ପେଟ ଭିତରେ ଯେତେ କଥା ଲୁଚାଇଲେ ମୁଖରେ ଲୁଚି ପାରେନା—ପଦାକୁ ଫୁଟି ଦେଖାଯାଏ । ଯେପରି ଘରର କଥା ବାହାରକୁ ନ ଯାଏ, ସେଥିପାଇଁ ତ ବିନୁଙ୍କର ସବୁ ଚେଷ୍ଟା । ସେ ପ୍ରାୟ କେଉଁଠିକି ଯାଆନ୍ତିନି । ଏଇ ଘରେ ଖାଲଟାରେ ବସି ବସି ବୋର ହେବାଠୁ ଗୃହକର୍ମ କରିବା ଭଲ ଭାବିଛନ୍ତି ।

କିନ୍ତୁ ଯାଇ ପାରିନାହାନ୍ତି ଏଇ ବସନ୍ତଙ୍କ ପାଇଁ, କାଳେ ତାଙ୍କର ଅସୁବିଧା ହେବ ବୋଲି । ନିଜ ଜୀବନକୁ ଏଇପରେ ଜ୍ୱଳନ୍ତା ରୂପେ ଜଳାଇ, ଆଲୋକ ଦେବାକୁ ଚାହିଁଛନ୍ତି—ଆପ୍ରାଣ ଚେଷ୍ଟା କରିଛନ୍ତି ବସନ୍ତଙ୍କ ପାଇଁ । ଋତୁ ସବୁ କଷ୍ଟ ନିର୍ଯ୍ୟାତନା ସହିବାକୁ ସ୍ୱୀକାର କରିଛନ୍ତି । କିନ୍ତୁ ବସନ୍ତ ପରି ତାଙ୍କର ନୁହେଁ—ଲକ୍ଷେ ଯତ୍ନ କରିବା ସତ୍ତ୍ୱେ—ତେବେ ଉପାୟ କ'ଣ ?

ଏବେ ଆଉ ଉପାୟର ଚିନ୍ତା ବା କ'ଣ ଥାଇପାରେ । ଦିନେ ସମୟ ଥିଲା, ଯେତେବେଳେ ବସନ୍ତ ବିବାହ ପ୍ରସ୍ତାବ ଦେଇଥିଲେ, ଋତୁ ବାରଣ କରିଥିଲା "ନା ବସନ୍ତ, ଫ୍ରେଣ୍ଡସିପ୍ ଆଉ 'ବିଭାହେବା ଦୁଇଟା ଅଲଗା ଜିନିଷ । ବଂର ଫ୍ରେଣ୍ଡସିପ୍, ଫ୍ରେଣ୍ଡସିପ୍‌ରେହିଁ ରହୁ" । କିନ୍ତୁ ବସନ୍ତ ସେଦିନ ଅଡ଼ି ବସିଥିଲେ—"ତୁମକୁ ବିଭା ନହେଲେ ମୋର ଜୀବନ ସମ୍ପୂର୍ଣ୍ଣ ଅପୂର୍ଣ୍ଣ ରହିଯିବ—ମୁଁ ଆଉ ବିଭା ହେବିନି । ସୁଇସାଇଡ୍ କରିବି ।" ସେଦିନ ବସନ୍ତଙ୍କ ଜୀବନ ଭିକ୍ଷା ଥାଳରେ ଭିକ୍ଷା ଭରି ଦେଇଥିଲେ ଋତୁ । ନିଜକୁ ମହମବତୀ ପରି ଜାଳି ଜାଳି ଆଲୋକ ଦେଖାଇବା ପାଇଁ ସ୍ୱୀକାର କରି ନେଇଥିଲେ ।

ବସନ୍ତଙ୍କର ଆନନ୍ଦ---ବସନ୍ତଙ୍କର ଦୁଃଖ, ଚିନ୍ତା, ସବୁ ନିଜର ମନେକରି, ଆଦରରେ ବରି ନେଇଥିଲେ । କିନ୍ତୁ ଆଜି ସେ ପ୍ରତିଜ୍ଞା, ଦୀକ୍ଷା ସବୁ ସେପରି ପାଣି ଫାଟି ଯାଉଛି । ଆଶାର ସୌଧଟା ଅକାଳ ଝଡ଼ରେ ଟଳି ପଡ଼ୁଛି । ସେ ଦିନର ଦୀକ୍ଷା କେଉଁଆଡ଼େ ଗଲା ? ସେ ଦ୍ୱାହି କୁଆଡ଼େ ଗଲା ? ସେ ଉତ୍ସାହ ଶକ୍ତି କିଏ କାଢ଼ିନେଲା ତାଙ୍କଠୁ ? ଶୁଭ ବିବାହ ପରିବର୍ତ୍ତେ ଅଶୁଭ ବିବାହ ହୋଇଗଲା । ଯୁଗଯୁଗର ସ୍ୱାତିଗଣ୍ଠି, ଗୋଟିଏ ଯୁଗରେ ଖୋଲିଗଲା ।

ଆଜି ଆଗରେ ବିରାଟ ଯାଉଁଳି ପଲଙ୍କରେ ଗଦି, ତକିଆ । ବଡ଼ ମୋଜାଇକ ଘର ଭିତରେ ଡ୍ରେସିଙ୍ଗ ଟେବୁଲ—ଗୋଟାଏ ପାଖକୁ ବସନ୍ତଙ୍କ ପଢ଼ା ଟେବୁଲ, ଟେବୁଲ କ୍ଲକ । ଘରର ଆସବାବପତ୍ର, ଗୃହର ପୁଷ୍ପାଧାର, ବାଗ ବଗିଚା, ଦାର, ଆଡମ୍ବର ପୁଞ୍ଜୀଭୂତ । ପଇସାର ଅଭାବ ନାହିଁ, ସେଉଁଥିରେ ତ ଉଣା ନାହିଁ । ଫେର ଭଗବାନ ଗୋଟିଏ ମନର ଉଣାରେ ଏତେବଡ଼ ସଂସାରଟା ସେପରି ଖାଙ୍କି ପଡ଼ୁଛି । ସବୁ ସୁଖ ଭିତରେ ଗୋଟିଏ ଦୁଃଖ ଥୋଇ ଦେଇଛନ୍ତି । ପୃଥିବୀଟା ମୁଣ୍ଡ ଉପରେ ଛିଡ଼ି ପଡ଼ିଲା ପରି ଲାଗୁଛି ।

ନିଜର ଉଠିବାକୁ ବଳ ପାଉନି—ବସନ୍ତକୁ ଧରି ଲୁଗା ବଦଳାଇବେ ବା କିପରି ? ଶୋଇଛନ୍ତି ତ ଶୁଅନ୍ତୁ—ନିଶ୍ଚିନ୍ତରେ । ତାଙ୍କର ବା ପ୍ରତିବନ୍ଧକ ହେବ କାହିଁକି ? ସେ ଘୃଣା କରୁଛନ୍ତି କରନ୍ତୁ । ଚିରୁ ବୋଝ ହୋଇ ଠିଆ ହୋଇଛି । ଚିରୁ ତାଙ୍କ ପାଖରୁ ଅପସରି ଯିବ କିପରି ? କେମିତି ? ଏ ବନ୍ଧନ ତ ଜନ୍ମ ଜନ୍ମାନ୍ତରର ।

ହଁ, ଜନ୍ମ-ଜନ୍ମାନ୍ତରର । ଆଶ୍ଚର୍ଯ୍ୟ ଲାଗେ, ଦାରୁଣ ଆଘାତରେ । ଦମନ, ପତନର ଶେଷ ସୀମା ଲଙ୍ଘନ କରିବା ପରି ମନେହୁଏ । ହାଃ ହୁତାଶନର ନିଆଁ ହୃଦସ୍ଥ ପୋଡ଼ିଦିଏ । ଏତେବଡ଼ ଘରଟାରେ ସେ ଏକା । ତା'ର ଦୁଃଖ ତାର ସୁଖ ଏକା ତା'ର । ଏକା ନୁହେଁ ତ ଆଉ କ'ଣ ? ଆଉଜଣେ ତ ପଲଙ୍କ ଉପରେ କିମ୍ଭୂତ-କିମାକାର ହୋଇ ଶୋଇରହିଛନ୍ତି । ନା ଅଛି ଚେତା, ନା ଅଛି ଭାବନା, ନା ଅଛି ଆଗ ପଛ, ଭଲମନ୍ଦ ବିଚାର । ଏହିପରି କେତେ ଦିନ ଏ ନାଟ ଲାଗିଥିବ ? ଏ ଅଙ୍କର ଶେଷ ଯବନିକା କେଉଁଠି, ତାହା ଖୋଜି ପାଏନା ବିଚରା ଚିରୁ । ପ୍ରେମରେ ପାଗଳି ହୋଇ ବାପା ମା, ବନ୍ଧୁବାନ୍ଧବ ଦିନେ ସେ ସବୁ ପଛକୁ ପକାଇ ଧାଇଁ ଆସିଥିଲା ବସନ୍ତ ସାଥିରେ ରହିବ ବୋଲି··· ।

ଏଇତ ସେଇ ବସନ୍ତ ? ଦିନେ ଯାହାର ରାଜପୁତ୍ର ପରି ଚେହେରା ସାଥିରେ ଗାମ୍ଭୀର୍ଯ୍ୟ-ପୂର୍ଣ୍ଣ ପୌରୁଷ ଥିଲା । ତା ଭିତରୁ ଋତୁ ପୁରୁଷପଣିଆର ଗୋଟାଏ ଦାମି ଇମେଜ୍ ପାଇଥିଲା । ଆଉ ଆଜି... ?

ଆଜି ସେ ସବୁର କିଛି ମାନେ ନାହିଁ—କିଛି ସେ ସବୁର ଅର୍ଥ ନାହିଁ ଋତୁ ପାଖରେ । ଆଖିରୁ ଲୁହ ଆକାରରେ ସେ ସବୁର ଅର୍ଥ ଝରି ଯାଉଛି । ବିଚାରୀ ଋତୁ ଦେହ, ମନ ସବୁକିଛି ଦେଇ ସର୍ବହରା ହୋଇପଡ଼ିଛି । ତା'ର ଅଳକୂଳ କିଛି ପାଉନାହିଁ ।

ହଁ, ଏକଥା କେଉଁ ଖବରକାଗଜ କି କେଉଁଠୁ ଶୁଣିଥିଲି ପରି ମନେହେଉଛି । ନିରାଶ ହୋଇ ପଡ଼ିଥିବା ବେଳେ ତ ଲୋକେ ବିଷର ଆଶ୍ରୟ ବି ନିଅନ୍ତି । କିନାଇନ, ଏଣ୍ଡ୍ରିନ୍, ଦଉଡ଼ି, କିରାସିନ ଆଉ ରେଳଧାରଣା ଏହିସବୁ କାମରେ ଲାଗେ ।

ମନ ଭିତରେ କିଏ ସତେ ଯେପରି ଧିକ୍‌କାର କରି କୁହେ, "ଛି, ତୁ ଶିକ୍ଷିତା । ଶିକ୍ଷାଦିକ୍ଷା କ'ଣ ପୋଡ଼ି ଖାଇଲୁ ? ଆତ୍ମହତ୍ୟା କରି ନିଜ ପାଖରୁ ନିଜେ ଡରି ପଳେଇ ଯିବୁ ? କାହିଁକି ? ତୁ ତ କିଛି କରିନାହୁଁ । ତୋ ପାଖରେ ସେ ସବୁ କଣ ଶୋଭାପାଏ ? ତୋର କଣ ଗୋଟାଏ ପେଟ ବି ପୋଷିବାକୁ ଅକ୍ଷମ···?"

ଋତୁ ବିଚାରୀ ନିରିମାଖି ହୋଇପଡ଼ିଛି । କାଳର କରାଳ ଗଡ଼ରୁ ମୁକ୍ତି ପାଇ ନାହିଁ । ବିସ୍ଫାରିତ ଚକ୍ଷୁରେ ଜିଜ୍ଞାସାର ଭାବ । ଲୁହ ଦୁଇ ଧାର କେତେବେଳୁ ବହିଆସି ଶୁଖି ଗଲାଣି । ଭୋକ କେତେବେଳୁ ମରିଗଲାଣି । ଋତୁ ସମାଧାନ ଚାହେଁ । ସ୍ୱାର ପ୍ରତିକାର ଚାହେଁ—ଶାନ୍ତି ଚାହେଁ ।

କିନ୍ତୁ କିଏ ଶାନ୍ତି ଦେବ ନିଜର ମାମଲାରେ ? ଆଉ କିଏ ପ୍ରତିକାର କରି ପାରିବ ? ଆପଣାର ଦୁଃଖ, ଆପଣାର କଥା ତ ଆପଣାକୁ ଲଭାଇବାକୁ ପଡ଼ିବ । ଯିଏ ପାରିଥାନ୍ତା ସେ ଶୋଇଛି । କଥା ତ ପ୍ରାୟ ତାଙ୍କ ମୁହଁରେ ନାହିଁ । କଥା କହିବା ପ୍ରାୟ ତୁଣ୍ଡରେ ଭୁଲିଗଲେଣି । ଏଣିକି କଥା ତ କୁହନ୍ତିନି, ସଦାବେଳେ କାହିଁକି ଖାଲି ଚଡ଼ଚଡ଼, ଭଡ଼ଭଡ଼ ହୁଅନ୍ତି । ଆଉ ଯେବେ ଯେପରି କଥା କହନ୍ତି ବୋମାର ବିସ୍ଫୋରଣ ଶବ୍ଦ

ଅଜଣା ଅଜଣା ପରି ମନେହୁଏ । ଆଘାତ ଦେବାର, ପ୍ରତିହତ କରିବାର ବୋମା । ତା ଭିତରେ ନଥାଏ ଆନ୍ତରିକତା—ନଥାଏ ସ୍ନେହ ।

ଆଷାଢ଼ର ଭରା ନଦୀଟି ସତେ ଯେପରି ରୁକ୍ଷ ମରୁଭୂମିରେ ପରିଣତ ହେଲା ପରି ମନେହୁଏ । ରତ୍ନାକୁ ନିରାଶତାର ଶେଷ ସୀମାରେ ପହଞ୍ଚାଇ ଦିଏ । ତା'ର ନିରୁତ୍ସାହ, ନିରର୍ଥକ ଆତ୍ମପ୍ରକାଶ କାତରତାରେ ଅଧୀର ହୋଇଉଠେ ।

ଶତ ଦୋଷ'ର ଲାଞ୍ଛନା ସତ୍ତ୍ୱେ ମଣିଷର ବିବେକବୁଦ୍ଧି ବେଳେବେଳେ ତା'ର ସର୍ବ ସନ୍ଧାନୀ କୌଶଳରେ ମଣିଷକୁ ବି ପରୀକ୍ଷା କରେ । ସେ ହେଉଛି ସାନ୍ତ୍ୱନା, ନିଜ ମନ ପାଖରେ ନିଜର ସାନ୍ତ୍ୱନା । ସେଠି ଦ୍ୱିତୀୟ ଜଣକର କୌଣସି ଆଶ୍ୱାସନା ନପାଇ ନିଜ ମନବଳର ପ୍ରତୀକ୍ଷା । ସେ ରହେ ଅପେକ୍ଷା—ଗୋଟିଏ ସଂଯତ ମନର ଲଗାମ ଭିଡ଼ା ମନ ଅପେକ୍ଷା କରେ । ମନ କହିଉଠେ, "ବସନ୍ତର ପରିବର୍ତ୍ତନ ହେବ—ଗୋଟାଏ ଖିଆଲ ମନରେ ପଶି ଯାଇଛି ନା—ଥୟ ଧର, ସବୁ ଠିକ୍‌ଠାକ୍ ହୋଇଯିବ ।"

ଏହି ସାନ୍ତ୍ୱନାର ବାଣୀ, ଏହି ଅମର ବାଣୀରେ ମନରେ ଆଶାର ସଞ୍ଚାର ହୁଏ । ଫେର ରତ୍ନା ସ୍ୱପ୍ନ ଦେଖେ । ଫେର ମରୁ ନଦୀରେ ବନ୍ୟା ଆସିବ—ତାର ଜଳ ଉତ୍ସରେ ଶସ୍ୟଶ୍ୟାମଳା ଧରଣୀକୁ ଅବଦାନ ଦେବ—ଫୁଲ ଫଳରେ ସୁନ୍ଦର ଦିଶିବ । ତା'ର ହସ ପଲ୍ଲବରେ ସାରା ଦୁଃଖ ଘୋଡ଼େଇ ଦେବ··· ।

ମନ କୁହେ, "ଅପେକ୍ଷା କର, କନେ । ଏତେଦିନ ତ ଗଲାଣି, ଆଉ କିଛି ଦିନ ଯାଉ । ତାକୁ ତ ବଞ୍ଚିବାକୁ ହେବ । ସେ ଯେ ଘରର ଲକ୍ଷ୍ମୀ—ପ୍ରାପ୍ୟ ସବୁ ଦାୟିତ୍ୱ ତା'ର । ମୁଣ୍ଡର ବାଳ ଝିଙ୍କି ବସିପଡ଼ିଲା ରତ୍ନା—'ଆହା' ଏହି ପଦକ ତାଙ୍କଠୁ ଯେପରି କିଏ ଛଡ଼ାଇ ନେଇ ଫିଙ୍ଗି ଦେଉଛି । ମୁହଁରେ ନ କହି କାର୍ଯ୍ୟରେ ଦୁଗୁଉଛି ।

"ତୁ କୁଳଟା, ତୁ ଅଲକ୍ଷ୍ମୀ, ତୁ ବାହାରି ଯା ।" ସେ ଯିବ କେଉଁଠିକି ? ଏହିପରି ପଡ଼ି ରହିବା ହିଁ ଭଲ । ଏହିପରି ବସି ଅପେକ୍ଷା କରିବ ବସନ୍ତକୁ । କାଳେ ବସନ୍ତ ତା'ର

ପୁରାତନ ମୂହୂର୍ତ୍ତକୁ ପୁଣି ଫେରି ଆଣିବ ? ସ୍ୱପ୍ନ ଦେବ—ବଢି ଯାଇଥିବା ସ୍ୱପ୍ନ— ଫେରି ଜୀବନ୍ତ କରିବ । ରାତି ପ୍ରାୟ ଦଶଟା ବାଜିଲାଣି । ୱାଲ କ୍ଲକଟି ତା'ର ସମୟ ସୂଚାଇ ଚାଲିଛି ବଡ଼ ନିର୍ବିଘ୍ନରେ । ଆଉ ଯେପରି କାହାକୁ ତା'ର ଖାତିର ନାହିଁ ।

ରାତି ଘନ ହେଉଛି । ବାହାର ରାସ୍ତାରେ ଲ୍ୟାମ୍ପ ପୋଷ୍ଟର ବତୀ ଜଳି ଚାଲିଛି— ଜଳି ଜଳି, ତା'ର ଆଲୋକ ରେଖାଟିରେ ପଥିକକୁ ପଥ ଦେଖାଉଛି । ରିକ୍ସା, ରିକ୍ସା ଟ୍ରକ୍, କାର ମଝିରେ ମଝିରେ ଘଁ ଘଁ ଶବ୍ଦ କରି ଚାଲିଛନ୍ତି । କୁକୁର ଗୁଡ଼ା ଭୁକୁଛନ୍ତି । ନିଜର ଆଧିପତ୍ୟ ବିସ୍ତାର କରୁଛନ୍ତି ।

ଋତୁ ଖାଇବା ଟେବୁଲକୁ ଗଲା—ତାକୁ ଖାଇବାକୁ ହେବ । ତାକୁ ବଞ୍ଚିବାକୁ ହେବ । ନିଜ ପାଇଁ ନୁହେଁ—ବସନ୍ତ ପାଇଁ । ବସନ୍ତକୁ ରାସ୍ତାକୁ ଆଣିବାକୁ ହେବ । ଆବର୍ତ୍ତନଶୀଳ ଦୁନିଆରେ ପରିବର୍ତ୍ତନର ଅପେକ୍ଷା କରିବାକୁ ହେବ ।

ଭୋକ ନଥିଲେ ବି ଖାଇବାକୁ ହେବ—ଖାଇବ, ଏକୁଟିଆ । ଋତୁ ପ୍ଲେଟ କାଢିଲେ । ଶୁଖି ଯାଇଥିବା ପଟେ ରୁଟି, କିଛି ଥଣ୍ଡା ହୋଇ ଯାଇଥିବା ଶିଝା ତରକାରି । ପେଟ ପାଇଁ ବସନ୍ତଙ୍କର ଶିଝା ତରକାରି ହୁଏ । ଛେନା, କ୍ଷୀର, ଅଣ୍ଡା, ଫଳ, ଓଃ, ନାଃ ସେ ସବୁ ଥାଉ । ସେ ସବୁର ଖାଇବା ଆଉ ଦରକାର ନାହିଁ । ପ୍ରୟୋଜନ ବି ନାହିଁ । ଏତିକି ହେଲେ ଚଳିଯିବ ।

ଟିକିଏ ପୁଷ୍ପାଶ୍ରୀଟାକୁ ଦେଖିବା । ସେ ଶୋଇଛି କି ନାହିଁ । ହେଲେହେଲେ ଭେଣ୍ଡା ଟୋକାଟା—ସବୁ ବୁଝୁଛି । ନା, ସେ ଶୋଇଛି । ଶୋଉ, ଭଲ ହୋଇଛି । ଆତ୍ମତୃପ୍ତି ଅନୁଭବ କଲେ ଋତୁ । ଏ ସବୁ କିଛି ଦେଖିନି । ନହେଲେ ସକାଳୁ, ସକାଳୁ ଯାଇ ବାହାରେ ସ୍ୱର ମଞ୍ଚାନ୍ତା । ଆଉ ବସନ୍ତଙ୍କର ତଳ ଅଫିସର, ସାନବାବୁଙ୍କ ଘରେ ଫୁସ ଫୁସ କରି କ'ଣ ସବୁ ଫୋଡନ୍ତା । ରାତି ଦଶଟା, ନିଘୋଡ ନିଦ, ଆଉ ଶୁଣିବ କ'ଣ ? ଭଗବାନ ଯାହା କରନ୍ତି ଭଲ ପାଇଁ ।

ଋତୁ ଶୋଇବାର ଚିନ୍ତା କରିବାକୁ ଲାଗିଲେ । ସତରେ କ'ଣ ସେ ବାଞ୍ଚିବ ? ସତରେ କଣ ସବୁଦିନ ପାଇଁ ସେ ନିଃସନ୍ତାନ ରହିଯିବେ ? ବର୍ତ୍ତମାନ ସମୟରେ ଚିନ୍ତା ଯେପରି ଋତୁଙ୍କର ସାଙ୍ଗ, ସାଥି ଓ ସହଚରୀ ହୋଇଛନ୍ତି ।

ସେ ଦିନ କେଉଁଠି ସାନ ବାବୁଙ୍କ ଝିଅ, ବସନ୍ତ ବେଶ୍ୟା ଘରକୁ ଯିବାର ଦେଖିଥିଲା । ପ୍ରଭାତ ଚିହ୍ନିଛି ବସନ୍ତକୁ, ଆଉ ମିଛରେ ସେ କହିବ କାହିଁକି ? ଏତେ କଥା କଣ ମିଛ ହୋଇପାରେ ? ବିବେକର ତୁଳନା କରୁଥିଲେ ଋତୁ । ବସନ୍ତ କ'ଣ ସେଇଥି ପାଇଁ ଏପରି ହେଉଛନ୍ତି ? ନହେଲେ ବିନା କାରଣରେ ଏପରି ହେବାର ମାନେ କ'ଣ ହୋଇ ପାରିଥାଏ !!

ଖାଲି ସେତିକି ନୁହେଁ, ସେ ବେଶ୍ୟାର ପୁଣି ଗୋଟିଏ ପାଞ୍ଚ ବର୍ଷର ପୁଅ ବି ଅଛି । ଠିକ୍ ବସନ୍ତଙ୍କର କାର୍ବନ କପି । ବସନ୍ତଙ୍କର ଆଖି ପରି ଆଖି, ଓଠ ପରି ଓଠ, ତା'ର ରୂପରେ ସବୁ ଯେପରି ମିଶିଯାଏ । "ଏପରି ବି କ'ଣ ହୁଏ ?" ନିଜ ମନର ପ୍ରଶ୍ନ ବାରମ୍ବାର ଉଠି ମନକୁ ବିବ୍ରତ କରୁଛି ଅନ୍ତରର ନିଭୃତ କନ୍ଦରରେ । ଏକ ଅଜଣା ସନ୍ଦେହ, ଦୁଃଖରେ ଭାଙ୍ଗି ପଡୁଛି ।

ସେ କୁନି ପୁଅଟିକୁ ଭଲକରି ପ୍ରଭାତ ଚାହିଁଲା—ଘର ଦେଖିବା ପାଇଁ ଚାଲି ଚାଲି ହୋଇ ଗଲା । ପ୍ରଭାତ ତା ସାଙ୍ଗ ଘରକୁ ଯାଉଛନ୍ତି । ସେ ବା ସିଆଡ଼େ ଯାଆନ୍ତା କାହିଁକି ? ବସନ୍ତ କ'ଣ କରୁଛନ୍ତି ଦେଖିବା ଇଚ୍ଛାରେ ଗଲା । କିନ୍ତୁ ଦାଣ୍ଡ ଦୁଆରେ ଗୋଟାଏ ବୁଢ଼ୀ ଜଗି ବସିଥିଲା । କହିଲା, "ହଇଲେ ଝିଅ, କାହାକୁ ଖୋଜୁଛୁ ? କାହାକୁ ଦରକାର ?" ପ୍ରଭା କହିଲା, "ନା, ନା, କାହାକୁ ନୁହେଁ । ଗୋଟାଏ ଘର ଖୋଜୁଥିଲି ସେ' ପାଇଲି । ଯାଉଛି ।" କହି ଫେରିଲା ।

ଋତୁ ମନରେ ଭାବୁଥିଲା । ବସନ୍ତଙ୍କର ବ୍ୟବହାରର ମାନେ କ'ଣ ? ବସନ୍ତ ଏପରି ହେବାର ମାନେ କ'ଣ ? ଋତୁକୁ ଅବହେଳା କରିବାର ଉଦ୍ଦେଶ୍ୟ କ'ଣ ? ଏହାର ବା ସମାଧାନ କେଉଁଠି ? ବର୍ତ୍ତମାନ ବସନ୍ତର ବ୍ୟବହାର ଦୁର୍ବହ ହୋଇଉଠିଛି ଋତୁ ପକ୍ଷେ । ଋତୁକୁ ରକ୍ଷିତା ସ୍ତ୍ରୀର ଆଖ୍ୟାରେ ଭୂଷିତ କରିଛି । ବସନ୍ତଙ୍କ ସବୁ ଦାବିଦାୱା, ସବୁ ସୁଖର ଅଧିକାରୀ ଋତୁ କିଛି ନୁହେଁ ଏ ଘରେ । ଋତୁ ଗଣ୍ଡାଏ ଭାତ ଖାଇ ବଞ୍ଚିଲେ ରହିପାରେ । ନିଜର ଇଚ୍ଛା, ନିଜର ଖୁସି··· ।

ଋତୁର ଖୁସି, ଋତୁର ଇଚ୍ଛା, ଋତୁ ମଣିଷ ନୁହେଁ, ଋତୁ କ'ଣ ପଶୁ ? ନା, ତା ହୋଇ ନପାରେ । ବସନ୍ତଙ୍କର ସବୁ ଦୋଷ କ୍ଷମା କରୁଥିଲା, କରୁଥାନ୍ତା ମଧ୍ୟ । କିନ୍ତୁ ଏ

ଦୋଷ ନୁହେଁ, ଏ ଦୋଷତ ଗୋରୁମଙ୍କ ଦୋଷଠୁଁ ବି ଭୟଙ୍କର । ଋତୁ କ'ଣ ମୂର୍ଖ ହୋଇଛି ? ଋତୁ କ'ଣ ଅବିବେକୀ ହୋଇଛି ? ଋତୁ କ'ଣ ରୋଜଗାର କରି ପାରିବନି ? ସ୍ୱାନବାବୁ ଘର ତ ଜାଣିଲେଣି । କାଲି ସକାଳେ ଅନ୍ୟ ସବୁ ଜାଣିବେ ।

ହଁ, ସବୁକିଛି ତ୍ୟାଗ କରି ବସନ୍ତ ଦୂରକୁ ଚାଲି ଯାଇଛି—ଋତୁଠୁ ବହୁତ ଦୂରକୁ । ଋତୁ ବାନ୍ଧି ରଖି ପାରିନାହିଁ ନିଜ ପଣତ କାନିରେ । ନିଜର ଅପାରଗତା ପାଇଁ ନିଜକୁ ନିଜେ ଧିକ୍କାରିଛି । ପୁରୁଷର ଉଙ୍ଗିତ ସଙ୍କେରେ ଅଜି ବସନ୍ତ ଋତୁଙ୍କୁ ପରିହାସ କରନ୍ତି ସତେ ଯେପରି—ଲକ୍ଷ୍ୟ ଦେଇ । ସେ ନିଃସନ୍ତାନ, ସେ ବାଂଝ—ସେ ଗୋଟିଏ କୁନି ପିଲା ବସନ୍ତକୁ ଦେଇ ପାରିବେ ନାହିଁ—ସେ ଏ ଘରର ଲୋକଙ୍କୁ ଆପଣାର କରି ପାରିଲେନି—ସେ ପର । ଋତୁ ଆପଣାର ନୁହେଁ—ଋତୁ ପର । ବହିଯାଉ ଆଖିରୁ ଲୁହ ସବୁଯାକ—ଆଉ ଦୁଃଖ କିଛି ନାହିଁ-- ଏହାଠୁ ବଳି ଯନ୍ତ୍ରଣା ଆଉ ଅଧିକ କିଛି ନାହିଁ ।

ତାର ସ୍ତ୍ରୀତ୍ୱକୁ ଅବମାନନା କରିବା, କ୍ଷତ ବିକ୍ଷତ କରିବାରେ ବସନ୍ତ ଯେପରି ହସୁଛନ୍ତି । ତାଙ୍କ ପାଖରେ ସବୁ ଅସମ୍ଭବ ବି ସମ୍ଭବ, ଅସତ୍ୟ ବି ସତ୍ୟ । ଋତୁ କ'ଣ କାଠ ଆଉ ପାଷାଣ ଯେ ସେ ନୀରବ ରହି ସବୁ ଦେଖୁଥିବ—ଶୁଣିଥିବ—ସବୁ ସହୁଥିବ ?

ମୀମାଂସାର ଖିଅ ଧରି ପାରୁନାହିଁ—ସମାଧାନବା କରିବ କିପରି ? କିଏ ବା କରିବ ? ବାପାଙ୍କୁ କି ଶଶୁରଙ୍କୁ ଏ ଖବର ଜଣାଇ ନାହିଁ । ଜଣାଇବାକୁ ଋତୁ ପ୍ରୟୋଜନ ମନେ କରିନି । ଏ ତ ନିଜର ମାମଲା, ନିଜର ଦଖଲ, କିଏ କ'ଣ ଛଡ଼ାଇ ପାରେ ? ନିଜର ଆଉଟା ମନର କୋହରେ ସେ ଜଳୁଛି । ଜଳି ପୋଡ଼ି ପାଉଁଶ ହେଉଛି । ଯା'ର ପ୍ରତିକାର ନିଜ ପାଖରେ ସେ ନିଜେ ।

ଦୁଃଖ ଡରଉ ଥିଲା—ଆସିଗଲା । ତା'ର ମୁକାବିଲା ସେ ନିଜେ କରିବ । ଆଉଟା ଦୁଃଖର ଜମାଟ ବାନ୍ଧିଥିବା କୋହ ଉଠୁଛି—ଆଖିରୁ ଅବିଶ୍ରାନ୍ତ ଲୁହ ଛୁଟିଛି । ବାସର ଠିକଣା ନାହିଁ । ମୁଣ୍ଡ ଘୂରୁଛି । ପୃଥିବୀଯାକର ଚିନ୍ତା ସତେ ଯେପରି ଠୁଳ ହୋଇଛି ଋତୁଙ୍କ ମୁଣ୍ଡରେ । ବସନ୍ତ ଋତୁକୁ ଛାଡ଼ି ବସିଛି—ବସିବେ ମଧ୍ୟ । ଋତୁ ଯେ

ଭିଡ଼ିଥିଲା, ଯେତେଥର ତା ଜୀବନରେ ଧକ୍କା ଆସିଛି ସେତେବେଳେ ସେ ଚାହିଁଛି ବସନ୍ତଙ୍କଠୁ ଦୂରେଇ ଯିବ । କିନ୍ତୁ ପାରିନଥିଲା । ବସନ୍ତଙ୍କୁ ସେ ଡାଇଭୋର୍ସ କରି ନିଜେ ମୁକ୍ତି ହୋଇ ପାରିବ, ସେ ଚିନ୍ତା ସେ କରିନଥିଲା ସ୍ୱପ୍ନରେ ମଧ୍ୟ । ତାକୁ ଦେଖା ଯାଉଥିଲା ବସନ୍ତ, ଖାଲି ବସନ୍ତ । ବସନ୍ତମୟ ଦୁନିଆଁ, ପ୍ରେମମୟ ଦୁନିଆଁ ଭିତରେ ନିଜର ତ୍ୟାଗ ଶ୍ରେଷ୍ଠ ମନେକରିଥିଲା ! ନିଜର ସୁଖ ଦୁଃଖ ଭୁଲି ବସନ୍ତଙ୍କ ସେବା ଯତ୍ନରେ ତତ୍ପର ହୋ'ଇ ଉଠିଥିଲା । ବସନ୍ତଙ୍କୁ ଶାନ୍ତି ଦେବ, ସୁଖ ଦେବ, ସେବା କରିବ ବୋଲି । ସେ ଯେ ତା'ର ସ୍ତ୍ରୀ—ଧର୍ମର ପତ୍ନୀ ।

ନିଜର ଦୋଷ ନଥାଇ ବି ବସନ୍ତ ବର୍ଣ୍ଣି ପାରିଲେ—ଅନାବଶ୍ୟକ ଜିନିଷକୁ ପ୍ରିୟ କରି ଋତୁକୁ ରୁଷ୍ଟ କଲେ । ଋତୁକୁ ମଧ୍ୟ ବି ବର୍ଷ ଆସେ, ଚାଲି ଆସେ । ବସନ୍ତ ତା'ର ବେଶ୍ୟା ଘରେ ସବୁଦିନ ପାଇଁ ରହିବାକୁ ରାଜି ହୋଇଗଲେ ବସନ୍ତ ଖୁସି ହେବ । ବସନ୍ତଙ୍କର ମୁଣ୍ଡରୁ ବୋଝ ଓହ୍ଲାଇ ଯାଉଛି । ବସନ୍ତ ଶାନ୍ତି ପାଇବେ । ତାଙ୍କ ଜୀବନରେ ଯଦି ଋତୁ ବୋଲି କିଏ ଆସିଥିଲା ସେ ଭୁଲିଯିବେ—ଯାଆନ୍ତୁ ।

ଆଉ ସେ ଅପୂର୍ଣ୍ଣ ସ୍ୱର୍ଣ୍ଣ ମନ୍ଦିରକୁ ପୂର୍ଣ୍ଣାଙ୍ଗ କରିବାର ଆଶା ନାହିଁ, ଭରସା ବି ନାହିଁ । ମନ୍ଦିରଟି ଗଢ଼ିବାର ପୂର୍ଣ୍ଣାଙ୍ଗ ସ୍ୱପ୍ନରେ ସତେ ଋତୁ କେତେ କାତର ହେଉଥିଲେ । ଗଢ଼ୁ ଗଢ଼ୁ ମନ୍ଦିରଟି ଭାଙ୍ଗି ପଡ଼ିଛି ଅକାଳ ଝଡ଼ରେ । ଋତୁ ଯେତେ ଆଖିର ଲୁହରେ ଧୋଇଲେ, ଯେତେ ତାକୁ ଖୋଜିଲେ ବା ପାଉଛନ୍ତି କେତେକେ ? ସେ ତାଙ୍କର ଅକୁହା କଥାରେ ରହିଯାଇଛି । ଋତୁ ଛିଣ୍ଡା ପଣତ କାନି ପାରି କ'ଣ ପାଉଁଛନ୍ତି ? ସର୍ବିର ଜସମିନ୍ ଫୁଲ ନା ନିଜର ଆଖିର ଲୁହ ? କ'ଣ ? ହୁଏତ ଏଇ ଗୋପନ କଥାର କାହାଣୀ କହିବ ଆକାଶ, ପବନ, ମୂକ ସାକ୍ଷୀ ହୋଇ ଯେ ସେମାନେ ଦେଖିଛନ୍ତି ।

ଅତୀତର ସ୍ମୃତି ବିଜଡ଼ିତ ଦିନଗୁଡ଼ିକ, ରାତିଗୁଡ଼ିକ ଏହି ଦୈନନ୍ଦିନରେ ତାଙ୍କର ଛବି ଲେଖି ଲେଉଟି ଯାଇଛନ୍ତି, ନିଜର ପ୍ରକୃତି କୋଳରେ ସଜାଡ଼ି କରି କରି । ଆକାଶର ଚନ୍ଦ୍ର କେତେଥର ଉଠି ଲୁଚିଯାଇଛି ବାଦଲର ବୁକୁରେ । କେତେ ଶ୍ରାବଣର ବାରି ଧାରା ବରଷି ବରଷି ଚାଲି ଯାଇଛି । ଫେର ନିଦାଘ ତପ୍ତ ଖରାରେ ଜାଳି ପୋଡ଼ି ପାଉଁଶ କରିଛି ବନ, ବୃକ୍ଷ ଆଉ ଶୋଭାକୁ । ଶରତ ଆସିଛି—କାକର ବରଷିଛି, ରଙ୍ଗ ବେରଙ୍ଗ ଫୁଲରେ ଅବନୀକୁ ଆହୁରି ଶୋଭାବତୀ କରିବାକୁ । ତା'ର ସେ କମନୀୟ

ସୌନ୍ଦର୍ଯ୍ୟ ରୂପରେ ଆଜି ଆଉ ପାଗଳଙ୍କ ପଣ ନାଚ ଯାଉନାହିଁ ତୃପ୍ତି । ରଜନୀଗନ୍ଧା, ସୂର୍ଯ୍ୟଗନ୍ଧାର ବାସ ଆଉ ବୁଣୁନାହିଁ ମନରେ— ।

ଯେପରି ରୁକ୍ଷ ମରୁଭୂମିର ସାହାରା ଡୋଳୁଛି ମନରେ । ବନ ଜଳିଯାଉ—ଗିରି ସରିଯାଉ—ପ୍ରକୃତି ତା'ର ଶୋଭନୀୟ ପାଣିରେ ମନ ଯାହାର ଜଳୁ । ସେ ସବୁର ଅର୍ଥ ଆଜି ତୃପ୍ତି ପାଖରେ କିଛି ନାହିଁ । ପାଷାଣୀ ତୃପ୍ତି କାହିଁକି ଯେ ବଞ୍ଚୁଛି ସେଇ ଏକା ଜାଣେ । ଚନ୍ଦ୍ରକୁ ଛାଡ଼ି କି ପୂର୍ଣ୍ଣିମୀ ହୁଏ ? ରବିକୁ ଛାଡ଼ି କି ଦିନର ଆଲୋକ ବାରି ହୁଏ ? କାହାକୁ ଛାଡ଼ି କାହାର ପୂର୍ଣ୍ଣ ବିକାଶ ହୁଏ । ହୁଏତ ତୃପ୍ତିକୁ ଛାଡ଼ି ବସନ୍ତର ପୂର୍ଣ୍ଣ ପ୍ରକାଶ ହେବ, ଏକଥା ହୁଏତ ତୃପ୍ତି ଅନୁମାନ କରି ଜାଣୁଛି । ତୃପ୍ତିର ଜାଣିବା ନ ଜାଣିବା, ଭଲ ମନ୍ଦକୁ କ'ଣ ବସନ୍ତଙ୍କ ସଂସାର ଅନାଇଁ ବସିଛି ? କେବେ ନୁହେଁ—ତୃପ୍ତି ତାହାହେଲେ କ'ଣ ବସନ୍ତଠୁ ବାଦ୍ ?

ସାଗରଠୁ କ'ଣ ଲହରୀ ଦୂରେଇ ଯାଇ ପାରେ ? ଆକାଶରୁ କ'ଣ ସୂର୍ଯ୍ୟ ଛୁଟି ଯାଇ ପାରେ ? କାୟାଠୁ କ'ଣ ଛାୟା ଦୂର ହୋଇ ପାରେ ? ଏତେଗୁଡ଼ିଏ ପ୍ରଶ୍ନର ଉତ୍ତର କେଉଁଠୁ ତୃପ୍ତି ପାଇବେ ? କିଏ ବା ଦେଇ ପାରିବ ? ପ୍ରକୃତି ସାଥିରେ ପୁରୁଷ ଯୁଦ୍ଧ କରୁଛି, ତେବେ ବ୍ୟତିକ୍ରମ କେଉଁଠି ?

ମଣିଷ ସାଥିରେ ପ୍ରକୃତି ତା'ର ଖେଳ ଖେଳି ଚାଲିଛି ଅନାଦ୍ୟଠୁ ଅନନ୍ତ ଯାଏ । ତା'ର ହିସାବ କିତାବ ନାହିଁ । ଭଲକୁ ବି ବିଗାଡ଼ି ପାରେ—ବିଗାଡ଼ିଥିବାକୁ ବି ସଜାଡ଼ି ପାରେ । ତା'ର ଖେଳ ଅସମ୍ଭବ । ସେଇ ଅସମ୍ଭବ ହିଁ ସମ୍ଭବରେ ପରିଣତ ହୋଇଛି ତୃପ୍ତି ପାଖରେ । ତା'ର ହିସାବ ନାହିଁ—ଧନୀ, ଦରିଦ୍ର, ପାଠୁଆ, ଅପାଠୁଆ । ଯାହା ଉପରେ ବି ଧିର ଇଚ୍ଛା, ଖେଳ ଖେଳିବାର ଖେଳିବ । ମଣିଷ ନା'ଟି ର । ମଣିଷର କିଛି ଯେପରି କର୍ତ୍ତୃତ୍ୱ ନାହିଁ । ସମୟର କରାଳ ଗର୍ଭ ମୁଖରେ ତା'ର ପତନ ଅବସମ୍ଭାବୀ । କେହି ବର୍ତ୍ତି ନାହିଁ କାଳ ମୁଖରୁ । ଏହି କାଳର କଳା ମୁଖ ସବୁବେ କି ବଦଳ ?

ବଦଳ କରି ଆଜି ଡୋଳାଉଛି ତୃପ୍ତିର ସ୍ନେହ, ପ୍ରେମ, ଚିନ୍ତା—ସବୁକିଛି । ସବୁ ଓଲଟ-ପାଲଟ ହୋଇଯାଇଛି । ଅବସ୍ଥାଚକ୍ରରେ ଘୂରିଯାଇଛି ଚକ···।

ବସନ୍ତ ବାଉଳାରେ ତା'ର ନିଜର ପରିପ୍ରକାଶ ଭୁଲିଛି । ତୃପ୍ତି ତା'ର ପ୍ରକୃତିର ଶୋଭାକୁ ଭୁଲି ସେ ବା ଲକ୍ଷ୍ୟଚ୍ୟୁତ ହୋଇଛି । ବସନ୍ତଙ୍କର ସେ ସରସ ହସ ନାହିଁ,

ଚିତ୍ରର ରୂପ ନାହିଁ । ଚିତ୍ରୁ ତା'ର ପ୍ରଥମ ପୃଷ୍ଠାରେ ଯେପରି ଗୋଟିଏ ବଳିଷ୍ଠ ବିଚ୍ଛେଦ—ପ୍ରେରଣୋଜ୍ଜ୍ୱଳା ହୋଇଉଠିଛି । ଜଡ଼ ପାଲଟି ଯାଉଛି । ମୁକ୍ତ ହୋଇ ଯାଇଛି—ତା'ର ଶ୍ରଦ୍ଧାସ୍ପଦ ସୌରଭରେ ଗୋଟିଏ ସଂସାରର ପତନ ଘଟିଛି । ଗୋଟିଏ ପ୍ରକୃତି ଓ ଗୋଟିଏ ପୁରୁଷର ମିଳିତ ହୃଦୟ, ମିଳିତ ସ୍ପନ୍ଦନ, ମିଳିତ ସ୍ଖଳନରେ ସୃଷ୍ଟିହବା ଯେ ହସେ । ତା'ର ସେ ହସ କଳଙ୍କନୀୟ ପୁରୁଣା ହେଲେ ମଧ୍ୟ ଯେପରି ମଣିଷ ଅସ୍ୱୀକାର କରି ପାରେନାହିଁ ।

ଚିତ୍ରୁ ମନରେ ଅନେକ ପ୍ରଶ୍ନବାଚକ ଚିହ୍ନ । ଆଲମାରି ଖୋଲି ତା'ର ଆପଏଣ୍ଟମେଣ୍ଟ ଲେଟର ଦେଖିଲା । ହଁ ସମୟ ଅଛି । ଆଉ ଠିକ୍ ତିନି ଦିନ ଅଛି—ଟିଲ୍‌ଗୁଡ଼ି କଲେଜରେ ଲେକ୍‌ଚରରସିପ୍ ମିଳୁଛି । ଯିବ ? ମାୟା ମମତାର ବନ୍ଧନ ଛିଣ୍ଡାଇ ଯିବାକୁ ପଡ଼ିବ । ହାତ ଯୋଡ଼ିଲା ଚିତ୍ରୁ··· ।

× × ×

ଟ୍ରେନ୍ ଚାଲିଛି ତା'ର ଗନ୍ତବ୍ୟ ପଥରେ—ଷ୍ଟେସନ ଆସିନାହିଁ । ନୂଆ ଜାଗା, ନୂଆ ମଣିଷ । ବର୍ଷା ଯାଇନି—ଶୀତ ବି ପଡ଼ିନାହିଁ । ଫେର ବି ଦେହରେ ଶୀତର ମୃଦୁ କମ୍ପନ ଅନୁଭୂତ ହେଉଛି । ଗାଡ଼ି ରହିଲା—ଲମ୍ବା ସଡ଼କ—ସିଲିଗୁଡ଼ିର ମିଲେଟେରି କ୍ୟାମ୍ପର କେତେଗୁଡ଼ିଏ ସୋଲଜର ଓହ୍ଲାଇଲେ । ତାଙ୍କ ପାଖ ଦେଇ ପାଖ କରି ଗଲେ ଗୋଟିଏ ଭଦ୍ର ମହିଳା, ଧଳା ଶାଢ଼ୀ ପରିହିତା । ଧଳା ବ୍ଲାଉଜ ସାଥିରେ ଆଖିରେ ପାୱାରବାଲା ଚଷମା । ମୁଣ୍ଡର ବାଳ ଗୋଟାଏ ଗୋଟାଏ ପାଚିବାକୁ ଲାଗୁଛି । ଧଳା ରଙ୍ଗର ଭ୍ୟାନିଟି ବ୍ୟାଗ୍ । ସେ ରିଷ୍ଟୱାଚ୍‌କୁ ଦେଖିଲେ । ମୁଣ୍ଡରେ ସିନ୍ଦୁର ବିନ୍ଦୁଟି ଅକ୍ଷତ ଅବସ୍ଥାରେ ଅଛି । ତରତର ଗଳାରେ କହିଲେ, "ଏ କୁଲି, ସାମାନ ଉଠାଓ ଔର ଟଙ୍ଗାକୋ ବୋଲାଓ ।" ବେଗରେ ମହିଳା ଅନ୍ଧାର ଭିତରେ ମୁହାଁ ଅପସରି ଯାଇଥିଲେ । ଟଙ୍ଗାର ଘୁଙ୍ଗୁରର ଶବ୍ଦ ହେଉଥିଲା, "ହେଇ ଚଲ୍", "ହେଇ ଚଲ୍" ।

× × ×

ଇସ୍ପାତ ନଗରୀର ଚଲଣି—ଟାଟା ନଗରୀର ନିଜସ୍ୱ ଚଲଣି—ଚାଲି ଆସିଛି । ସୁଟାର ଶବ୍ଦ କାନ ଅତାଇ ଦେଉଛି । ଚିମିନିରେ ଅପରିସ୍ମୃ ଧୂଆଁରେ ସକାଳର ନିର୍ମଳ ବାତାବରଣକୁ କଳୁଷ କରୁଛି । ସକାଳ ଛଅଟି ସାରି ଶ୍ରମିକ, ଅଫିସର ସବୁ ଚାଲି-ଛନ୍ତି, ମଟର, ସାଇକେଲ ଆଉ ପାଦରେ ଚାଲି ଚାଲି । କେତେଗୁଡ଼ିଏ ଛୋଟ ଛୋଟ

ଦୋକାନରେ ଚା' ଖାଇବାକୁ ଲୋକଙ୍କ ଭିଡ଼ । ଟିଫିନ୍ କ୍ୟାରିଅର କାହା ହାତରେ ତ, କାହା ହାତରେ ବ୍ୟାଗ । ଘରମୁହାଁ ସମସ୍ତେ ଚାଲିଛନ୍ତି—ଦିନର କୋଳାହଳ ଧୀରେ ଧୀରେ ବଢ଼ୁଛି ।

ବସନ୍ତଙ୍କର କ୍ୱାର୍ଟରଟା ମେନ ରୋଡ଼ରୁ ବହୁତ ପଛରେ । କିନ୍ତୁ ବସନ୍ତଙ୍କ ଘରକୁ ଟ୍ରକ କାରର ଶବ୍ଦ ଶୁଭେ । ଘରର ଝିରକିରୁ ଗେଟ ଦେଖି ହୁଏ । ବଡ଼ ବଡ଼ ଗ୍ରିଲ୍ ଲଗା କାଚ ଝିରକି । ବଗିଚା, ଲନ୍ । ଆଉ ବଗିଚାର ଚମତ୍କାର ଅନେକ ଫୁଲ । ରଙ୍ଗ ବେରଙ୍ଗର ବାରମାସୀ ଚଢ଼େଇ ପରି ତାର ଭଲ ଭଲ ରଙ୍ଗ—ଦିଶେ ଯେପରି ଋତୁ ତା'ର ମନପ୍ରାଣ ଦେଇ ଏଇ ଫୁଲ ଗଛ ମୂଳରେ ତା'ର ମମତା ବାଣ୍ଟି ଚାଲି ବଢ଼ାଇଛି ।

ବସନ୍ତ ବଗିଚାକୁ ଚାହିଁ ଶୋଇ ରହିଥିଲେ—ସିମିଲି ତକିଆରେ ନିଜର ଦେହର ଭାର ଦେଇ । କାଗଜ ପଢ଼ା ସରିଲା । ଉଇକ୍ଲି ଟେଢ଼ା ଅଧା ହେଲାଣି, ଚା' ଆସିନି ଏପର୍ଯ୍ୟନ୍ତ । ଚା' ଖାଇ ସିଗାରେଟ ଟାଣିବେ, ତା ପରେ ବାଥ୍ ରୁମ, ଦାନ୍ତଘଷା, ଗାଧୁଆପାଧୁଆ ଇତ୍ୟାଦି ।

ବସନ୍ତ ଉଠିଲେ—ବହୁତ ଡେରି ହେଲାଣି । କାହାରି ଚା' ଦେବାର ତତ୍ପରତା ନାହିଁ । "ମଦନା", "ମଦନା", ପାଟି କଲେ ସେଇ ବେଡ଼ ରୁମରୁ । ମଦନା ବା ଶୁଣୁଛି କେତେବେଳେ ? ସେ ତ ପାଟି କରୁଛି ଦୁଧବାଲା ଉପରେ । ମଦନା କହୁଛି, ହେଁ, ତୁ ଠିକ୍ ବେଳବେଳକୁ ପହଞ୍ଚିଲା ହୋଇ ନଥିବ ଚାଲି ଆସିବୁ, ଦୁଧ ଦେଲାବେଳକୁ ଡେରି । ତୋତେ କେତେଥର କହିଲିଣି ଯେ ଶୀଘ୍ର ଦୁଧ ଆଣିବୁ, ଛ'ଟାବେଳକୁ ବାବୁ ଚା' ପିଇବେ । ଭାଗ୍ୟ ଭଲ ଯେ ବାବୁ ଆଜି ଉଠିନାହାନ୍ତି । ଆଉ ମୁଁ କ'ଣ ଚା' ପିଇବି, ଏତେବେଳେ ଦୁଧ ଆଣୁଛୁ ?" ମଦନା ପାଟି ଶୁଣି ବେହେରା ଡରିଗଲା, ନାଗୁଆ ଛଡ଼େଇ ଦେବେ କାଳେ । ସେ କାକୁତି ହୋଇ କହି ଚାଲିଛି "ପୁଅଟା ଯାହେବ, ଟିକେ ଡେରି ହୋଇଗଲା । କାଲି ଶୀଘ୍ର ଆଣିବି । ଆଜି ମୋ ଦେହ ଭଲ ନାହିଁ, ଡେରି ହୋଇଗଲା ।" ମଦନାର ରାଗ ବଢ଼ିଛି । ବାବୁ ଏଇନେ ତାଙ୍କର ସବୁ ରାଗ ତା ଉପରେ ସାରିଦେବେ । ଉଠି ତର ତର ହୋଇ ଚା' ବସାଇବାକୁ ଗଲା । ଦେଖିଲା ଚା' ପତ୍ର ପାଇଁ ଭୁଲି ଯାଇଛି । ଏଇ ଚା' ଟା ବଡ଼ ଅଡୁଆ ଜିନିଷ । ଗେଞ୍ଜିଖଣ୍ଡେ ଗଳାଇ ବଜାର ଦୌଡ଼ିଲା । ମନରେ ଚିନ୍ତା, ଏତେ ସକାଳୁ କ'ଣ ଦୋକାନ ଖୋଲିଥିବ ?

ବସନ୍ତଙ୍କର ପ୍ରାୟ ଏହି ସ୍ୱଭାବ ବହୁତ ଦିନର । ଋତୁ, ଚା ଆଣି ଉଠାଏ । ବସନ୍ତ ଖଟଟି ଉପରେ ଶୋଇ ଶୋଇ ଚା ସିଗାରେଟ ଶେଷ କରନ୍ତି । ତା ପରେ ବାଥ୍‌ରୁମରୁ ଫେରି ଅଳ୍ପ କିଛି ଜଳଖିଆ ଖାଇ ବାହାରି ଯା'ନ୍ତି କାମକୁ । ଦିନେ ଦିନେ ଖାଇବାକୁ ମଧ୍ୟ ଦୁଇଟାବେଳେ ଆସନ୍ତିନି । ଫେରୁ ଫେରୁ ରାତି ଏଗାର, ବାର । ତା'ର କୌଣସି ବ୍ୟତିକ୍ରମ ହୁଏନାହିଁ—ଋତୁ ଯେତେ ପାଟି କଲେ ମଧ୍ୟ ।

ଘରର ପ୍ରତ୍ୟେକ ଦାୟିତ୍ୱ ଋତୁଙ୍କର । କୌଣସି ଦିନ ଆପତ୍ତି ଅଭିଯୋଗ ବି ଋତୁ କରିନାହାନ୍ତି । ଘରର ସବୁଗୁଡ଼ିକ ଦାୟିତ୍ୱ ସତେ ଯେପରି ଋତୁର—ଋତୁ ଆଦରି ନିଅନ୍ତି । ଆଉ ମଧ୍ୟ ବୁଝନ୍ତି ଯେ ବସନ୍ତ କେତେ କାର୍ଯ୍ୟବ୍ୟସ୍ତ ବୋଲି । ପାଠ ପଢ଼ିଛି ତ—ସବୁ ବୁଝନ୍ତି, ଘର କିପରି ଚଳିବ ?

ସବୁ ସିଗାରେଟ ସରିଲେ ମଧ୍ୟ ଆଜି ଯେ ଚା ମିଳୁନି । "ମହନା, ଏ ମହନା" ଡାକ ଛାଡ଼ୁଛନ୍ତି ବସନ୍ତ । କେହି ଶୁଣୁ ନାହାନ୍ତି—ଶେଷକୁ "ଋତୁ", "ଋତୁ" ଡାକ ମଧ୍ୟ କେହି ଶୁଣୁ ନାହାନ୍ତି । ନିଜର ପ୍ରତିଧ୍ୱନି ଫେରି ଆସୁଛି ନିଜ ପାଖକୁ । ଏତେ ବଡ଼ ଘର, ଖାଁ, ଖାଁ, ଲାଗୁଛି ।

ଧୋତି ଆଉ ଗେଞ୍ଜି ପିନ୍ଧି ବାବୁ ଦାଣ୍ଡ ଦୁଆରେ ଠିଆ ହୋଇଛନ୍ତି—ମହନାଠୁ ଉତ୍ତର ଚାହୁଁଛନ୍ତି । ମହନା ବାବୁଙ୍କୁ ଦେଖି ପିଳେହି ପାଣି ହୋଇଗଲାଣି । ବାବୁ ଉଠି ଗଲେଣି ବୋଲି ଡର ଡର ହୋଇ ଧାଉଁଛି ।

"ଆରେ ମହନା, ମା କାହାନ୍ତି ? ସକାଳୁ ଚା'ବି ଟିକେ କରି ପାରିଲୁନି ?" "ଆଜ୍ଞା, ମା ଗାଧୁଆ ଘରେ ଥିବେ", ଝାମ ଖିଆଲ ମନରେ ମହନା କହି, ଚା କରିବାକୁ ଦୌଡ଼ିଲା ।

ବସନ୍ତ ବାଥରୁମ ଦେଖିଲେ—ଦାଣ୍ଡ, ବାରି ଖୋଜିଲେ । କେଉଁଠି ଋତୁ ନାହିଁ, କାହା ଘରକୁ ଯାଇ ପାରିଥାଏ । ଏତେ ସକାଳୁ ସକାଳୁ ? ଚା ନଖାଇ ? ପଚାରିଲେ "ମହନା ତୁ ମାଙ୍କୁ ଦେଖିଛୁ ?" "ଦେଖିନି ବାବୁ । ମୁଁ ତ ଖିର ବାଲାଠୁ ଖିର ଆଣି, ଚା ପାଇଁ ଯାଇଥିଲି ।" ମହନା ଡରି ଡରି କହି ଚାଲିଲା ।

ତେବେ, ମା'ଙ୍କ ଲୁଗାପଟା କାହିଁ ? ମା'ଙ୍କ ସୁଟକେଶ କାହିଁ ? ତାଙ୍କର ତେଲ, ପାନିଆ, ସାବୁନ, ଚପଲ, ଶାମ୍ପୁ ଇତ୍ୟାଦି କାହିଁ ? ତେବେ କୁଆଡ଼େ ଗଲେ ? ବସନ୍ତଙ୍କ ମୁଣ୍ଡରେ କିଛି ପଶୁନି ।

ତାଙ୍କ ବାପାଙ୍କ ପାଖକୁ, ନା ଆମ ଘରକୁ ? ନା ସିପ୍ରା ପାର୍କକୁ ? କେଜାଣି କୁଆଡ଼େ ଗଲେ ? ଇତ୍ୟାଦି—ନାନା ପ୍ରଶ୍ନ । କିନ୍ତୁ କହିବ କିଏ—ଶେଷ କଥାବାର୍ତ୍ତା କାଲି ସକାଳ ଆଠଟାବେଳେ—ମନେ ପଡ଼ୁଛି । କିଛି ତ କହିନ !! ଘରେ ଏପଟ ସେପଟ ହୋଇ ଏକ ପ୍ରକାର ଦେହ ଦରଜ ହୋଇ ଯାଉଛି । କେତେବେଳୁ ଧୂଆଁଯା ଚା ଦେଇ ଯାଇଛି, ଚା ପିଇବାକୁ ଇଚ୍ଛା ହେଉନି । ମୁଣ୍ଡ ଘୂରି ଯାଉଛି—ସମସ୍ତ ବେଶି ବେଶି ବଢ଼ି ଚାଲିଛି । ବାହାରେ ରୌଦ୍ରର ତାପ ବଢ଼ି ଚାଲିଛି, ରତ୍ନ ଫେରିନାହିଁ— ।

ଦାଣ୍ଡ ଦୁଆରେ କଲିଂ ବେଲ୍ ବାଜୁଛି । ମହିନା କହୁଛି, "ଅଜ୍ଞା, ସୌମେନ୍ଦ୍ର ବାବୁ ଆସିଛନ୍ତି" । ବସନ୍ତଙ୍କ ମୁହଁରୁ କିଛି ବାହାରୁ ନାହିଁ । ହଁ, କି ନାହିଁ, କିଛି ଅଜ୍ଞ କାନକୁ କଥା ଶୁଭୁନାହିଁ । ନିଜ ମନ ଭିତରେ ପ୍ରବଳ ସ୍ୱରରେ ପ୍ରତିଧ୍ୱନିତ ହେଉଛି, "ରତ୍ନ ପଳେଇଗଲା, ରତ୍ନ ପଳେଇଗଲା ମୋତେ ଛାଡ଼ି ?"

ଆଉଥରେ ମହିନା କହିବାର ଶୁଣାଗଲା, "ଆଜ୍ଞା, ସୌମେନ୍ଦ୍ର ବାବୁ ଆସିଛନ୍ତି, ଏଠିକି ଡାକିବି ନା ବସିବାକୁ କହିବି ?" ସୌମେନ୍ଦ୍ର ବାବୁଙ୍କର ଆଉ ଦାଣ୍ଡ ଦୁଆରେ ଠିଆ ହେବାକୁ ଧୈର୍ଯ୍ୟ ନାହିଁ । ସେ ଘର ଭିତରକୁ ପଶିଆସିଲେ । ଏ କି କଥା ? ସୌମେନ୍ଦ୍ର ଆସିବା ଶୁଣିଲେ ବସନ୍ତ ନିଜେ ଦୌଡ଼ି ଯାଆନ୍ତି ପାଛୋଟି ଆଣିବାକୁ । ଉଚ୍ଛନ୍ନ ହୋଇ କହୁଥାନ୍ତି, "ଆରେ, ବସ ବସ, ମୁଁ ଯାଉଛି ।" ଆଜି ତ କ'ଣ ଜାଣି ପାରୁନି । କଥା କ'ଣ ? ଏ ସବୁର ବ୍ୟତିକ୍ରମ କେଉଁଠି ? "ଶୁଣ ବସନ୍ତ, ଆଜି ଗୋଟାଏ ଜରୁରୀ କାମ ପଡ଼ିଲା । ମୁଁ ଶୋଇଥିଲି । ସୁଧାଂଶୁ ବାବୁ ଡାକିଲେ ଆଉ ମୁଁ ଆସିଲି ତୋ ପାଖକୁ ।" ସୌମେନ୍ଦ୍ର ଉତ୍ତରକୁ ଅପେକ୍ଷା ନକରି କହିଚାଲିଲେ, "ତୁ ଟିକେ ଶୀଘ୍ର ଆରେଞ୍ଜ କରିବୁ । ଦୁଇ ଜଣ ଫରେନର୍ ଆସିଛନ୍ତି, ତାଙ୍କ ରହିବା ପାଇଁ ଗେଷ୍ଟ ହାଉସ୍‌ରେ ବନ୍ଦୋବସ୍ତ କରିବୁ । ଆଉ ଡିନରଟା ଯେପରି ତାଙ୍କ ସାଥିରେ ଖାଇବୁ । କାଲି ରୋଟାରୀ କ୍ଲବ୍‌ର ଆନୁଆଲ ଫଙ୍କ୍‌ସନ—ତେଣୁ ତୋ ମନେଅଛି କି ନାହିଁ, ତୋତେ ଜଣାଇଦେଲି । ମୋର ଅଫିସିଆଲ ଟୁର୍ ଅଛି, ମୁଁ ଯାଉଛି, ବୁଝିଲୁ ? ମୋର ଏତେ କାମ ଯେ, ମୁଁ ନ ଆସିଲେ ହେବ ନାହିଁ ବୋଲି ମୁଁ ଚାଲିଆସିଲି, ବୁଝିଲୁ ? ମୁଁ ଯାଉଛି, ତୁ ସବୁ ଆରେଞ୍ଜ କରିବୁ । ହଁ ସୁଧାଂଶୁ ବାବୁଙ୍କ ସାଥିରେ ଟିକେ ଦେଖା କରିବୁ ।"

ବସନ୍ତ ସେମିତି ଇଜି ଚେୟାରଟାରେ ବସିରହିଛନ୍ତି—ସୌମେନ୍ଦ୍ର ଚାଲିଗଲେଣି—ରତ୍ନ ଫେରି ନାହିଁ । 'ସୌମେନ୍ଦ୍ର', 'ରୋଟାରୀ କ୍ଲବ' କିଛି ଯେପରି ମୁଣ୍ଡରେ ପଶୁ

ନାହିଁ କ'ଣ କରିବ ? ଏତେ ଚଞ୍ଚଳ ଏତେ ଘଟଣା ସବୁ ହୋଇଯାଉଛି, ମୁଣ୍ଡରେ କିଛି ପଶୁନି । ଆକାଶଟା ମୁଣ୍ଡ ଉପରେ ସତେ ଯେପରି ଭାଙ୍ଗି ପଡ଼ୁଛି ।

ସୌମେନ୍ଦ୍ରଙ୍କୁ କହିଥିଲେ ହୋଇଥାନ୍ତା ରିତୁ ବିଷୟ । କିନ୍ତୁ କିଛି କହି ପାରିନାହାନ୍ତି । ରିତୁକୁ ହେଲେ ସୌମେନ୍ଦ୍ର ଖୋଜିଥାନ୍ତା । ଆଉ ବା ପାଖରେ କିଏ ଅଛି ସାହାଯ୍ୟ କରିବ । ସୁଶାନ୍ତ ତ ବହୁତ ଦୂରରେ ।

ସୂର୍ଯ୍ୟଙ୍କ ପ୍ରଖର କିରଣରେ ଇସ୍ପାତ ନଗରୀର ଟାଙ୍ଗରା ଭୂଇଁ ତାତି ଉଠୁଛି । ଟାଙ୍ଗରା ଭୂଇଁର ରୁକ୍ଷତା ଆହୁରି ରୁକ୍ଷ ହେଉଛି—ବସନ୍ତ ଗୁ ଖାଇନାହାନ୍ତି—ବସନ୍ତ ଗାଧୋଇ ନାହାନ୍ତି—ବସନ୍ତ ଜଳଖିଆ ଖାଇ ନାହାନ୍ତି—ବସନ୍ତ ପାଗଳ ହୋଇ ଉଠୁଛନ୍ତି—ବସନ୍ତ କାଠ ପାଲଟି ଯାଉଛନ୍ତି—ବସନ୍ତ ସ୍ଥାଣୁ ପ୍ରାୟ ବସି ରହି ଚିନ୍ତା କରୁଛନ୍ତି··· ।

ମୁଣ୍ଡ ଉପରେ ପଙ୍ଖାଟା ଖୁବ୍ ଜୋରରେ ଘାଇଁ ଘାଇଁ ବୁଲୁଛି । ଘୁଙ୍ଖାଗ୍ରୀ ମାରୁଛି ଟଙ୍କା—କ'ଣ ସମ୍ବାଦ ଆଣିବ । ମୁଣ୍ଡରେ କିଛି ପଶୁନି । ଦେହରେ ଉଠିବାକୁ ବଳ ନାହିଁ । ଯେତେ ଶୀଘ୍ର ହେବ ବୋଉକୁ ଆଣିବାକୁ ହେବ ।

ଦାଣ୍ଡରେ କିଏ ଡାକିଲା, "ଆଜ୍ଞା ପୋଷ୍ଟମ୍ୟାନ୍" । ମହନାକୁ ବଢ଼ାଇ ଦେଲା ଟେଲିଗ୍ରାମଟା ଆଉ ସାଇନ୍ କରିବାକୁ କାଗଜଟା । କ'ଣ ରିତୁ ପାଖରୁ ଆସିଛି ? ନା, ନା, ଆଉ କେଉଁଠୁ ?

ଉତ୍କଣ୍ଠା, ନଇରାଶ, ବେସାହାରା, କ୍ଷୁଧା, ଶୋଚନା, ମନସ୍ତାପ ସବୁ ମିଶାମିଶି ହୋଇ ଏକାକାର । ତା ଭିତରେ ବିସ୍ମୃତ ବସନ୍ତଙ୍କର ସତ୍ତା କେଉଁଠି ? ଜାଣେନା ? ଯନ୍ତ୍ରବତ୍ ଚାଲିଛି ।

ହଁ, ଟେଲିଗ୍ରାମ ଖୋଲିବ ? ଡର ଲାଗୁଛି । ଭିତରେ ସାପ ଅଛି କି ବେଙ୍ଗ ଅଛି ଜାଣି ହେଉନି । ହାତ ନିସ୍ତେଜ ହେଉଛି । ନ ଖୋଲିଲେ ଜାଣିବ ବା କିପରି ? ଭୟରେ ଭୂତ ଡରାଉଛି । ଜାଣିବାର ଅଭିପ୍ରାୟ ବଳବତୀ ହେଉଛି । ହଁ ନାହିଁ, ହଁ ନାହିଁ, ଭିତରେ ମନ ଦୋଳାୟମାନ । ଟେଲିଗ୍ରାମ ଖୋଲା ହେଲା । ଦେଖିଲେ "ମଦର୍ ସିରିୟସ, କମ୍ ସୁନ୍ ।"

ମୁଣ୍ଡ ଉପରେ ସୂର୍ଯ୍ୟ ଘୂରୁଥିଲେ । ମନ ଭିତରେ ଅସଂଖ୍ୟ ଚିନ୍ତା ଘାରୁଥିଲା । ଅସୁବିଧା ତା'ର ସାଙ୍ଗ ହାତ ଧରି ଆହୁରି ଅସୁବିଧା କରି ତାଙ୍କୁ ପରୀକ୍ଷା କରୁଥିଲେ ।

ବୈଶାଖର ନିଦାଘ ତାପ ମନକୁ ଆହୁରି ଦହନ କରୁଥିଲା । ଧୂଆଁଳିଆ ଡାକୁଥିଲା ଖାଇବାକୁ, "ଅନ୍ନ ଥଣ୍ଡା ହୋଇଗଲା ।"

ଋତୁ ନିକଟ ସ୍ଥାଣୁ ପ୍ରାୟ ବସି ରହିଥିଲେ ମେଧାବୀ ଛାତ୍ର ବସନ୍ତ ପଟ୍ଟନାୟକ । ପ୍ରତିଷ୍ଠିତ ଗ୍ରେଡ ଓ୍ୱାନ୍ କର୍ମଚାରୀ । ମନରେ ପ୍ରଳାପ କରୁଥିଲେ, "ଋତୁ ଫେରିଆସ, ଋତୁ ଫେରିଆସ, ତୁମେ" । "ମୋର ସବୁ ଭୁଲ ହୋଇଛି । ତୁମବିନା ଘର ଭଲ ଲାଗୁନି । ଏତେବଡ଼ ସଂସାରର ଦାୟିତ୍ୱ ମୁଁ କ'ଣ ସମ୍ଭାଳି ପାରିବି ? ବାହା ଝିଅ ଶ୍ୱଶୁରଘର ଗଲା । ତୁମେ ଥିଲ ବୋଲି ମୁଁ ବୁଲୁଥିଲି, ଏବେ ଫେରିଆସ ।" "କେଉଁଠୁ ପାଇବି ମୁଁ ତୁମକୁ ? କେଉଁଠିକି ଯିବି ଖୋଜିବାକୁ ? ମୋ ଜୀବନରେ ଶୂନ୍ୟ ହା, ହା କାର, କାହିଁକି ଭରିଦେଲ ?" ବସନ୍ତ ହୁଏତ ଜାଣି ନଥିଲେ, ଏହିପରି କେତେ ଦିନ, କେତେ ରାତି ଋତୁଙ୍କ ଜୀବନରେ ହା, ହା କାର ଭରି ଯାଇଥିଲା··· ।

ବସନ୍ତ ଖାଇ ନାହାନ୍ତି, ବସନ୍ତ ଗାଧୋଇ ନାହାନ୍ତି, ବସନ୍ତ ବିବ୍ରତ ହୋଇ ସନ୍ତାପ ମନରେ ବସିଛନ୍ତି । ଋତୁ ଆଜି ଏସବୁ ଦେଖିବାକୁ ନାହିଁ, କି ସାନ୍ତ୍ୱନା ଦେବାକୁ ନାହିଁ ।

ଋତୁ ତା'ର ଶୂନ୍ୟ ମନ୍ଦିରରେ ପ୍ରତୀକ୍ଷା ଦେବତାର ନୀରବ ପୂଜାରେ ମନ ନିୟୋଜିତ କରୁଥିଲା ସିଲିଗୁଡ଼ି କଲେଜର ଟିଚର୍ସ ହଷ୍ଟେଲର ସିଙ୍ଗଲ ରୁମ୍ ଆପାର୍ଟମେଣ୍ଟରେ । ହଷ୍ଟେଲ ବଏ କହୁଥିଲା—"ମେମ୍ ସାହେବ ବାଥ୍ ରୁମରେ ଗରମ ପାଣି ଲଗା ଦିଆ ।" ଋତୁ ରହିଥିଲେ ନୀରବ ଆଉ ନିଶ୍ଚଳ—ଟେବୁଲ ପାଖ ଚୌକିଟିରେ ।

